ଷଷ୍ଠ ବର୍ଷ
ଚତୁର୍ଥ ସଂଖ୍ୟା
ସେପ୍ଟେମ୍ବର ୨୦୧୧

ଓଡ଼ିଶାର ପ୍ରଥମ ସଂପୂର୍ଣ୍ଣ ଓଡ଼ିଆ ସାହିତ୍ୟ ଇ-ପତ୍ରିକା

# ଆହ୍ୱାନ

ସଂପୂର୍ଣ୍ଣ ଓଡ଼ିଆ । ସଂପୂର୍ଣ୍ଣ ଉତ୍କଳୀୟତା

ଷଷ୍ଠ ବର୍ଷ, ଚତୁର୍ଥ ସଂଖ୍ୟା
ସେପ୍ଟେମ୍ବର, ୨୦୧୧

ଓଡ଼ିଶାର ପ୍ରଥମ ସଂପୂର୍ଣ୍ଣ ଓଡ଼ିଆ ଇ-ପତ୍ରିକା
# ଆହ୍ୱାନ
୬

## ଆସ ଓଡ଼ିଆରେ ଲେଖିବା, ପଢ଼ିବା, ପଢ଼ାଇବା



ପ୍ରତିଷ୍ଠାତା ଓ ସଂପାଦକ

# ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପି.ଜି.ଡ଼ି.ଏମ୍.ସି.ଏଚ୍, ପି.ଜି.ଡ଼ି.ଏଚ୍.ଏମ୍

ଯୋଗାଯୋଗ : ବୀମା ନଗର, ଆମ୍ବପୁଆ ମୁଖ୍ୟ ରାସ୍ତା, ବ୍ରହ୍ମପୁର, ପିନ୍: ୭୬୦୦୧୦, ଓଡ଼ିଶା, ଫୋନ୍: ୯୮୬୧୯୬୨୧୬୦

ଓଡ଼ିଆ ଭାଷାର ଲୁପ୍ତପ୍ରାୟ ପରଂପରା
ଯେଉଁଥିରେ ଲୋକମାନେ ପରସ୍ପର ସହିତ
ପଦ୍ୟାବଳୀରେ ବାର୍ତ୍ତାଳାପ କରୁଥିଲେ
ସେମିତି ଏକ ପରଂପରାକୁ ବଞ୍ଚାଇ ରଖିବା
ପାଇଁ ଆମ ସହ ହାତ ମିଶାଇଥିବା ଏବଂ
ଓଡ଼ିଆ ଭାଷାର ଉନ୍ନତି ନିମନ୍ତେ ଆଗଭର
ହୋଇଥିବା ସମସ୍ତ ଓଡ଼ିଆ ଭାଇ ଭଉଣୀ
ମାନଙ୍କ ଉଦ୍ଦେଶ୍ୟରେ ଉତ୍ସର୍ଗୀତ




## ପ୍ରଚ୍ଛଦ

ଓଡ଼ିଶାର ପ୍ରାଚୀନ ସାଂସ୍କୃତିକ ନୃତ୍ୟକଳା ଓଡ଼ିଶୀ ସାଂପ୍ରତିକ ସମୟରେ ବିଶ୍ୱବ୍ୟାପୀ ଆଦୃତ ହେଉଛି । ଓଡ଼ିଶା ମାଟିର ହୃତ ଗୌରବର ସଂସ୍କୃତମୟ ଓ ଗୌରବମୟ ପରଂପରାର ଧାରାକୁ ବିଶ୍ୱ ପରିବାର ସମ୍ମୁଖରେ ଉପସ୍ଥାପିତ କରି ସମ୍ମାନର ଅଧିକାରୀ ହୋଇଥିବା ଏହି ନୃତ୍ୟ ପ୍ରତି ଲୋକମାନଙ୍କୁ ଆକୃଷ୍ଟ କରିବା ଉଦ୍ଦେଶ୍ୟରେ ଚଳିତ ମାସର ପତ୍ରିକାର ପ୍ରଚ୍ଛଦ କୁନୀ ନୃତ୍ୟାଙ୍ଗନା ‘‘ନ୍ୟାସା ନବୋଦିତା’’ ଙ୍କ ଓଡ଼ିଶୀ ନୃତ୍ୟ ପୋଷାକ ପରିହିତ ଏହି ଛବି ଦ୍ୱାରା ଉପସ୍ଥାପନ କରାଯାଇଛି ।

## ଆହ୍ୱାନ ପ୍ରକାଶନ ବିଷୟରେ ସମ୍ୟକ୍ ବିବରଣୀ

- ଆହ୍ୱାନ ଇ-ପତ୍ରିକା ଓଡ଼ିଶାରୁ ପ୍ରକାଶିତ ପ୍ରଥମ ଏବଂ ଏକମାତ୍ର ସଂପୂର୍ଣ୍ଣ ଓଡ଼ିଆରେ ପ୍ରକାଶିତ ସାହିତ୍ୟ ଇ-ପତ୍ରିକା ।
- ଏହା ପ୍ରତ୍ୟେକ ମାସର ପ୍ରଥମ ସପ୍ତାହରେ ପ୍ରକାଶିତ ହୋଇଥାଏ ।
- ବେଳେ ବେଳେ ପୂଜାପର୍ବପର୍ବାଣୀ ସମୟରେ ସମୟୋପଯୋଗୀ ବିଶେଷ ସଂସ୍କରଣ ମାନ ମଧ୍ୟ ପ୍ରକାଶିତ ହୁଏ ।
- ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗ ଯଥା, ଗଳ୍ପ, କବିତା, ପ୍ରବନ୍ଧ, ରମ୍ୟ ରଚନା, ଶିଶୁ ରଚନା, ଭ୍ରମଣ କାହାଣୀ ଇତ୍ୟାଦି ଏଥିରେ ପ୍ରକାଶିତ ହୁଏ
- ଏହି ପତ୍ରିକାରେ ଲେଖା ପ୍ରକାଶିତ କରିବା ପାଇଁ ନୂଆ ଓ ପୁରୁଣା ଉଭୟ ସାହିତ୍ୟକାରଙ୍କୁ ପ୍ରୋତ୍ସାହନ ଦିଆଯାଇଥାଏ ।
- ଯେହେତୁ ଏହି ପତ୍ରିକା ନିଃଶୁଳ୍କ ବିତରଣ ନିମିତ୍ତ ଉଦ୍ଦିଷ୍ଟ ତେଣୁ ଲେଖକ ଲେଖିକା ମାନଙ୍କୁ କୌଣସି ପ୍ରକାରର ପ୍ରୋତ୍ସାହନ ରାଶି ଦିଆଯାଏ ନାହିଁ ।
- ପାରିଶ୍ରମିକ ଆଶା କରୁଥିବା ଲେଖକ ଲେଖିକା ମାନେ ନିଜ ଲେଖା ବ୍ୟବସାୟିକ ପତ୍ରପତ୍ରିକାକୁ ପଠାଇ ପାରିବେ ।
- ଏହି ପତ୍ରିକା ପ୍ରତ୍ୟେକ ମାସରେ ଇଣ୍ଟରନେଟ୍‌ରେ ନିଃଶୁଳ୍କ ପଢ଼ିବା ପାଇଁ ଉପଲବ୍ଧ ହୋଇଥାଏ ।
- ପାଠକ ଚାହିଁଲେ ଏହି ପତ୍ରିକାର ଗୋଟିଏ ପ୍ରତିଲିପି ନିଜ କଂପ୍ୟୁଟରରେ ଡ଼ାଉନ୍‌ଲୋଡ୍ କରି ପାରିବେ ।
- ଏହି ପତ୍ରିକା ଉନ୍ନତି ହେତୁ ଆପଣଙ୍କ ସହାୟତା ଆମର ଏକାନ୍ତ କାମ୍ୟ ।
- ଲେଖକ ଲେଖିକା ମାନେ ନିଜ କୃତି ଆମ ନିକଟକୁ ଡ଼ାକଦ୍ୱାରା କିମ୍ବା ଇ-ମେଲ୍ ଦ୍ୱାରା ପଠାଇପାରିବେ ।
- ଡ଼ାକ ଦ୍ୱାରା ପଠାଉଥିଲେ ନିଜ ଲେଖାକୁ ଧଳା କାଗଜର ଗୋଟିଏ ପାର୍ଶ୍ୱରେ ନିର୍ଭୁଲ ହସ୍ତାକ୍ଷରରେ ଲେଖି ପଠାନ୍ତୁ, କିମ୍ବା ଟାଇପ୍ କରି ମଧ୍ୟ ପଠାନ୍ତୁ ।
- ଇ-ମେଲ୍ ଦ୍ୱାରା ପଠାଉଥିଲେ ଲେଖାକୁ ଲେଖି ସାରିବ ପରେ ସ୍କାନିଂ କରି ଆମ ଇ-ମେଲ୍ ଠିକଣାରେ ପଠାନ୍ତୁ ।
- ଆହ୍ୱାନର ପ୍ରକାଶନ ସଂପୂର୍ଣ୍ଣ ପରିବେଶ ଅନୁକୂଳ, କାରଣ ଏହାଦ୍ୱାରା କାଗଜର ବ୍ୟବହାର କମ ହୋଇଥାଏ, ଯେଉଁଥିପାଇଁ ଗଛ କାଟିବାକୁ ପଡ଼େନାହିଁ ।

ଆମକୁ ଲେଖା ପଠାଇବା ଠିକଣା : -

# ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଏମ୍.ବି.ବି.ଏସ୍, ପିଜିଡ଼ିଏମ୍‌ସିଏଚ୍, ପିଜିଡ଼ିଏଚ୍‌ଏମ୍

ବୀମା ନଗର, ବ୍ରହ୍ମପୁର, ୭୬୦୦୧୦, ଓଡ଼ିଶା, ଫୋନ୍:- ୯୭୧୯୭୨୧୭୦ / ୯୦୪୦୯୮୫୪୭୩

ଇ-ମେଲ୍ : aahwaan@gmail.com

# ସୂଚୀପତ୍ର



# ସଂପାଦକୀୟ

ବିଗତ ସଂସ୍କରଣକୁ ଆପଣ ମାନଙ୍କ ସ୍ନେହ ଓ ଶ୍ରଦ୍ଧାର ବର୍ଷାଦେଖି ଆଖି ଓଦା ହୋଇଗଲା । ଯେଉଁଥି ପାଇଁ ଆହ୍ୱାନର ଅବସ୍ଥିତି ତାହା ସେ କିଛିକାଂଶରେ ପାଇ ପାରିଛି ଜାଣି ବହୁତ୍ ଖୁସି ଲାଗିଲା । ପ୍ରତ୍ୟେକ ଥର କିଛି ନୂଆ କରିବାର ଚେଷ୍ଟା ଆଉ ଉଦ୍ୟମକୁ ଆପଣ ମାନଙ୍କ ପରି ପାଠକ ପାଠିକାଙ୍କ ସ୍ନେହ ଓ ସହାନୁଭୂତିରୁ ଯେଉଁ ପ୍ରେରଣା ମିଳେ ତାହା ଯଥେଷ୍ଟ । ଅବଶ୍ୟ ଅନେକ ଆମକୁ ଖୋଲାଖୋଲି ପ୍ରଶଂସା କରୁଥିବା ବେଳେ କେଇଜଣ ସହୃଦୟ ବ୍ୟକ୍ତି ଆମକୁ ପରୋକ୍ଷରେ ପ୍ରେରଣା ଯୋଗାଇଛନ୍ତି, ତେବେ ସେମାନଙ୍କ କଥା ପରେ କହିବି ।

ଅଗଷ୍ଟ ମାସରେ ପତ୍ରିକାର ପ୍ରକାଶନ ପରେ ପରେ ସେପ୍ଟେମ୍ବର ମାସପାଇଁ ଅନେକ ଯୁବବନ୍ଧୁ ଶୁଭେଚ୍ଛା ଜଣାଇ ଯାହା ସବୁ ସମ୍ବାଦ ଦେଇଥିଲେ, ସେ ସବୁକୁ ଏହି ପତ୍ରିକାରେ ସ୍ଥାନ ଦେବା ସମ୍ଭବ ହୋଇଥିଲେ ସୁଦ୍ଧା କେବଳ କେତୋଟି ସମ୍ବାଦକୁ ହିଁ ସ୍ଥାନ ଦେଇଛି, ଏହା ବ୍ୟତୀରେକ, ବିଗତ ମାସରେ ପାଠକପାଠିକା ମାନଙ୍କ ନିମନ୍ତେ ଦିଆଯାଇଥିଲା ଗୋଟିଏ ପ୍ରଶ୍ନ – 'ଶ୍ରୀ ଜଗନ୍ନାଥ ମନ୍ଦିରରେ ଅଣ-ହିନ୍ଦୁ ମାନଙ୍କ ପ୍ରବେଶ କଟକଣା ରହିବା ଉଚିତ କି?' ର ଉତ୍ତରରେ ମିଳିଥିବା ସମସ୍ତ ପତ୍ର ଓ ମନ୍ତବ୍ୟକୁ ଏହି ସଂସ୍କରଣରେ ସ୍ଥାନ ଦିଆଯିବା ସହିତ ଆଗାମୀ ସଂସ୍କରଣ ନିମନ୍ତେ ପ୍ରଶ୍ନ ଦିଆଯାଇଛି ।

ଅଗଷ୍ଟ ମାସ ଥିଲା ଭାରତୀୟ ଗଣତନ୍ତ୍ର ନିମନ୍ତେ ଏକ ଘଟଣା ବହୁଳ୍ ମାସ । ୧୯୪୭ ପୂର୍ବରୁ ଭାରତର ସ୍ୱାଧୀନତା ହେତୁ ହୋଇଥିବା ଗଣସଂଗ୍ରାମର ପୁନଃଅବଧାରଣା କରି, ଦେଶରୁ ଭ୍ରଷ୍ଟାଚାର ଓ ଦୁର୍ନୀତି ରୂପକ କୁସଂସ୍କାରକୁ ଦୂର କରିବାର ପ୍ରୟାସ କରିଥିଲେ, ଶ୍ରୀ ଆନ୍ନା ହଜାରେ । ଆନ୍ନା ହଜାରେଙ୍କ ଆହ୍ୱାନରେ ବ୍ରତୀ ଲକ୍ଷ ଲକ୍ଷ ଲୋକ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ତାଙ୍କୁ ସମର୍ଥନ ଦେଇ ବିଭିନ୍ନ ପ୍ରକାରର ଧାରଣା, ଅନଶନ ଓ ଶାନ୍ତିପୂର୍ଣ୍ଣ ବିରୋଧ ଆଦିର ପ୍ରଦର୍ଶନ କରିଥିଲେ । ଦୀର୍ଘ ବାରଦିନର ଉପବାସ ପରେ ସରକାର ମଥାପାତି ଆନ୍ନା ହଜାରେ ଓ ସିଭିଲ୍ ସୋସାଇଟି ଦ୍ୱାରା ପ୍ରସ୍ତାବିତ ଜନ ଲୋକପାଳ ବିଲ୍‌କୁ ଲୋକସଭାରେ ମଞ୍ଜୁରୀ କରାଇବା ପ୍ରତିଶୃତି ଦେଇଥିଲେ ।

ଅନଶନ ଓ ଅହିଂସା ଦ୍ୱାରା ଏହି ଯୁଦ୍ଧକୁ ଜିତିବା ଆନ୍ନାଙ୍କ ସ୍ୱପ୍ନ ଥିଲା, ଯାହା ସାକାର ହୋଇଥିଲା । ଦେଶବ୍ୟାପୀ ଏହାକୁ ନେଇ ବିଭିନ୍ନ ସ୍ଥାନରେ ବାକ୍‌ବିତଣ୍ଡା ମଧ୍ୟ ହୋଇଥିଲା । ସେ ଯାହେଉ, ଜନ ଲୋକପାଳ ବିଲ୍ ଆସିଲେ ବଡବଡିଆ ମାନେ ସୁଧୁରିଯିବେ ବୋଲି ଆଶା କରିବା । ତଳସ୍ତରରେ ବି ଏହାର ପ୍ରଭାବ ଦେଖାଯାଇପାରେ । ଅବଶ୍ୟ କିଛି କହିହେବ ନାହିଁ । କାରଣ ଦୁର୍ନୀତିକୁ ଆମେ ରାଷ୍ଟ୍ରୀୟ ଚରିତ୍ରରେ ସାମିଲ୍ କରିସାରିଛେ । ପ୍ରତ୍ୟେକ ସ୍ଥାନରେ ପାଞ୍ଚ ଦଶ ଦେଇ ନିଜ କାମ କରାଇ ନେବାର ଦୁର୍ବାର ଅଭିଳାଷାକୁ ଆମେ କେମିତି ଅବଦମନିତ

କରିପାରିବା ତାହା ଦେଖିବାକୁ ରହିଲା ।

ଜନ ଲୋକପାଳ ଦ୍ୱାରା ସମାଜରୁ ଭ୍ରଷ୍ଟାଚାରକୁ ଦୂରେଇ ହେବ, ଏ ବିଶ୍ୱାସ ଅନ୍ତତଃ ମୋର ନାହିଁ । ଯେଉଁ ମହାନୁଭବ ଜନଲୋକପାଳ ହେବେ ସେ କେତେଜଣଙ୍କ ଅଭିଯୋଗ ଶୁଣିବେ, ଆଉ ଅଭିଯୋଗ କରିବ କିଏ ? ଚାକିରୀରୁ ଅବସର ନେଇଥିବା ଷାଠିଏ ବର୍ଷର ଜଣେ ବୃଦ୍ଧ ନିଜ ପେନ୍‌ସନ୍ ପାଇବା ପାଇଁ ବିନା ହାତଗୁଞ୍ଜାରେ କିଛି ପାଇବ କି ? ଯଦି ନ ଦେବ ସେ ବଞ୍ଚିବ କେମିତି ? ଆଉ ସେ କଣ ଜନ ଲୋକପାଳଙ୍କୁ ଅଭିଯୋଗ କରି ପାରିବ କି ? ଅଭିଯୋଗ କଲେ ତା ପେନ୍‌ସନ୍ ପେପର୍ କୁଆଡେ ଯେ ଗାୟବ ହୋଇଯିବ ତା କଥା ସ୍ୱୟଂ ଭଗବାନ ବି ଜାଣିପାରିବେ ନାହିଁ । ଏହା ମାତ୍ର ଏକ ଉଦାହରଣ । ଏମିତି ସବୁ ସ୍ଥଳରେ ଉତ୍କୋଚ ନେବା ଓ ଦେବା ଏକ ଚିରାଚରିତ ପ୍ରଥା ହୋଇଗଲାଣି । ଖୋଦ୍ ଭୁବନେଶ୍ୱର ରାଜଦାଣ୍ଡରେ ଗାଡ଼ି ଭିତରକୁ ହାତ ବଢ଼ାଇ ଟ୍ରାଫିକ୍ ପୋଲିସ୍ ମାନେ ହାତଗୁଞ୍ଜା ନେଉଥିବା ଅନେକ ଦେଖୁଛନ୍ତି, କେହି କେବେ ତାହାର ପ୍ରତିରୋଧ କରିବାର ସାହାସ୍ କରିଛନ୍ତି କି ? ନା କରିବେ ?

ଭ୍ରଷ୍ଟାଚାର ଯଦିଚ ଦୁର୍ନୀତି ବା ଅଣଆଇନସିଦ୍ଧ କିନ୍ତୁ ଏହା ସର୍ବତ୍ର ବ୍ୟାପ୍ତ, ଏହାକୁ ଦୂର କରିବାକୁ ହେଲେ ଆମକୁ ମାନସିକ ସ୍ତରରେ ପରିବର୍ତ୍ତନ ଆଣିବାକୁ ପଡ଼ିବ । ଏହି ବିଷୟ ଉପରେ ଆଧାରିତ ହୋଇଛି ଚଳିତ ମାସର ପ୍ରଶ୍ନ ? "ଭାରତ ଭୂମିରେ ଆସି ଆତଙ୍କଲୀଳା କରୁଥିବା ଆତଙ୍କବାଦୀମାନଙ୍କୁ ରାଷ୍ଟ୍ରୀୟ ସୁରକ୍ଷା ଦେଇ ବଞ୍ଚାଇ ରଖିବା କେତେଦୂର ଯୁକ୍ତିଯୁକ୍ତ ?" ଆପଣ ମାନଙ୍କ ଉତ୍ତରର ଅପେକ୍ଷାରେ ରହିଲୁ ।

କଥା ପ୍ରସଙ୍ଗରେ କହିଥିଲି ଯେ, କେତେକ ବନ୍ଧୁ ଆମକୁ ପ୍ରତ୍ୟକ୍ଷରେ ପ୍ରୋତ୍ସାହିତ କରୁଥିବା ବେଳେ କେଇଜଣ ବନ୍ଧୁ ଆମକୁ ପରୋକ୍ଷରେ ଉତ୍ସାହିତ କରିଛନ୍ତି । ବେଳେ ବେଳେ କିଛି ବନ୍ଧୁଙ୍କ କ୍ରିୟା ଆମକୁ ପରୋକ୍ଷରେ ଆଗକୁ ବଢାଇଥାଏ । ଅନେକ ବନ୍ଧୁଙ୍କ ଆକ୍ଷେପ ଓ ଆଲୋଚନା ଆମକୁ ଆହୁରି ଅଧିକ ଯତ୍ନଶୀଳ ହେବା ସହ ଉତ୍ସାହର ସହ କାମ କରିବାକୁ ଖୋରାକ୍ ଯୋଗାଇ ଥାଏ ।

ଅନେକ ଦିନତଳେ ଓଡ଼ିଶାର ଜନୈକା ମହିୟସୀ ଲେଖିକା ମୋତେ ଏହି ପ୍ରଶ୍ନ ପଚାରିଥିଲେ, ଏବଂ ନିକଟ ଅତୀତରେ ପୁଣିଥରେ ସେହି କଥା ମୋତେ ପଚାରିଥିଲେ ଆମ ବନ୍ଧୁ ରଶ୍ମୀ ରଞ୍ଜନ, ଯେ ଆପଣ 'ଆହ୍ୱାନ'କୁ ପ୍ରଥମ ଇ-ପତ୍ରିକା ବୋଲି କାହିଁକି କହୁଛନ୍ତି ? ଲେଖିକା ଜଣକ ମୋତେ ଉଦାହରଣ ଦେଇ କହିଥିଲେ ଯେ ଅତୀତରେ ରାଉରକେଲା ରାଷ୍ଟ୍ରୀୟ ବୈଷୟିକ ଶିକ୍ଷାସଂସ୍ଥା (ଏନ୍.ଆଇ.ଟି)ରେ ମଧ୍ୟ ଏକ ଇ-ପତ୍ରିକାର ପ୍ରଚଳନ ଥିଲା, ତେଣୁ ଆହ୍ୱାନ ସମ୍ଭବତଃ ପ୍ରଥମ ନୁହେଁ । ମୁଁ ତାଙ୍କୁ ସସମ୍ମାନେ ଜଣାଇ ଦେଇଥିଲି ଯେ, ସେ କହୁଥିବା କଥା ସତ, ୧୯୮୧ ମସିହାରେ ରାଉରକେଲା ସ୍ଥିତ ଏନ୍.ଆଇ.ଟିରେ କିଛି ଛାତ୍ରଛାତ୍ରୀ ପରୀକ୍ଷାମୂଳକ ଭାବେ ଏକ ଇ-ପତ୍ରିକାର ପ୍ରଚଳନ କରିଥିଲେ, ଏବଂ ତାହାର ନାମ ବୋଧହୁଏ 'ସମ୍ବିତ୍'

ଦେଇଥିଲେ । ହେଲେ ସେହି ଇ-ପତ୍ରିକା ଏକ ସଂପୂର୍ଣ୍ଣ ଓଡିଆ ଇ-ପତ୍ରିକା ନଥିଲା, କାରଣ ସେଥିରେ କେବଳ ଇଂରେଜୀ ଭାଷାରେ ଲେଖା ପ୍ରକାଶ ପାଉଥିଲା ଏବଂ ଓଡ଼ିଆ ଭାଷାରେ କେତୋଟି ହାତଲେଖାର ନକଲ ପ୍ରକାଶ ପାଉଥିଲା । ଏବଂ ଦ୍ୱିତୀୟତଃ ସେହି ପତ୍ରିକାର ପ୍ରକାଶନ ସମୟ ମାତ୍ର କେଇ ମାସ ଥିଲା । ମୋର ଯେତେଦୂର ଧାରଣା ତାହା କୌଣସି ଛାତ୍ର କିମ୍ବା ଛାତ୍ରୀ ନିଜ ପରୀକ୍ଷା ପାଇଁ କରିଥିବା ଏକ ପ୍ରୋଜେକ୍ଟର ଅଂଶ ମାତ୍ର ଥିଲା । ଅବଶ୍ୟ ସେ ବିଷୟରେ ସବିଶେଷ ବିବରଣୀ ମୋ ପାଖରେ ନାହିଁ । କିନ୍ତୁ ଆହ୍ୱାନ ଯେ ଓଡ଼ିଶାର ପ୍ରଥମ ସଂପୂର୍ଣ୍ଣ ଓଡ଼ିଆ ସାହିତ୍ୟ ଇ-ପତ୍ରିକା ଏଥିରେ ଦ୍ୱିମତ ନାହିଁ । ୨୦୦୬ରୁ ଅଦ୍ୟାବଧି ଛଅ ବର୍ଷଧରି ଅନବରତ ଏହା ପ୍ରକାଶିତ ହୋଇ ଆସୁଛି । ତଥାପି କିଛି ସହୃଦୟ ବନ୍ଧୁ ଏହାର ପ୍ରକାଶନରେ ଅହେତୁକ ବିରକ୍ତି ଭାବ ପ୍ରକାଶ କରି ଆମକୁ ଅନେକ ନାମରେ ନାମିତ କରିବାକୁ ପଛାଉନାହାନ୍ତି, ଅବଶ୍ୟ ସେ ସବୁ ନାମର ଅର୍ଥ ବୁଝିବା ଭଳି ଜ୍ଞାନ ଏ ଅଧମର ନାହିଁ । ସେହି ପରି ବନ୍ଧୁମାନଙ୍କୁ ଭଗବାନ ଦୀର୍ଘାୟୁ କରନ୍ତୁ, କାରଣ ସେହିପରି ଜ୍ଞାନୀ ବନ୍ଧୁଙ୍କ ଆକ୍ଷେପ ଆମ ପରି ନିର୍ବୁଦ୍ଧିଆଙ୍କୁ ପରୋକ୍ଷରେ ହେଉ ସୁଦ୍ଧା ଆଗଭର ହେବାକୁ ଖୋରାକ୍ ଯୋଗାଇଦେଉଛି ।

ଶେଷରେ ସମସ୍ତ ପାଠକ, ପାଠିକା, ଲେଖକ, ଲେଖିକା, ସହାୟକ, ଶୁଭାକାଂକ୍ଷୀ ଓ ବନ୍ଧୁମାନଙ୍କୁ ଅଭିନନ୍ଦନ ଜଣାଇ ଉପସ୍ଥାପନ କରୁଛି ସେପ୍ଟେମ୍ବର ମାସର 'ଆହ୍ୱାନ' । ଆପଣମାନଙ୍କ ମତାମତର ଅପେକ୍ଷାରେ ରହୁଛି ।

ଧନ୍ୟବାଦ

ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ



# ଶେଷ ବସନ୍ତର ଚିଠି

ମନୋଜ ଦାସ

ଛୋଟ ସହରଟିର ଅପେକ୍ଷାକୃତ ଜନବିରଳ ପଶ୍ଚିମପ୍ରାନ୍ତରେ କୋଡ଼ୋଟି ଆଧୁନିକ ଧରଣର ଘର - ଆକାଶ ରଙ୍ଗର, ବିସ୍କୁଟ ରଙ୍ଗର, କଦବା ସବୁଜ ଅଙ୍ଗୁର ଭଳି ଟହଟହ ସ୍ୱଚ୍ଛ ଓ ଲୋଭନୀୟ ।

ଏଇ କଲୋନୀର ଶେଷ ପ୍ରାନ୍ତରେ ଯେଉଁ ଦୁଇ ମହଲା ଘରଟି, ସଯତ୍ନବର୍ଦ୍ଧିତ ଫଳପୁଷ୍ପର ଗଛଲତା ଗହନରୁ ସେଇଟା ଦୂରକୁ ଦେଖାଯାଏ ଗୋଟାଏ ନୀଡ଼ ଭଳି ।

ନୀଡ଼ ଭିତରୁ ଯିମିତି ବିହଙ୍ଗ ଶାବକଟିଏ ଆଖିତୋଳି ଅନାଏ, ଠିକ୍ ସେମିତି ଦ୍ୱିତଳର ବାରନ୍ଦାରେ କେତୋଟି ପତ୍ରପୁଷ୍ପୋଚ୍ଛଳ ଟବ୍ ଭିତରୁ ଟିକି ଝିଅଟିଏ ରେଲିଂ ଉପରେ ଭରା ଦେଇ ଅନାଇ ରହିଥାଏ ରାଜପଥର ଦୃଶ୍ୟମାନ ସୀମା ପର୍ଯ୍ୟନ୍ତ ।

ସେ ପଥରେ ଦୈନିକ ଯାଏ କେତେ ଯାନବାହାନ, କେତେ କିସମର । କିନ୍ତୁ ଟିକି ଝିଅଟିର ନିର୍ନିମେଷ ଦୃଷ୍ଟିକୁ ନିମେଷକ ପାଇଁ ମଧ୍ୟ ସେମାନଙ୍କର ତୈଳାକ୍ତ ଗତିଶୀଳ ଦ୍ୟୁତି ଚମକାଇ ଦେଇ ପାରେନାହିଁ । ସେ ପଥରେ ଯାଏ ଡ୍ରମ ପିଟି ପିଟି, ସୁଲଳିତ ବଂଶୀ ବଜାଇ ବଜାଇ, ସିନେମାର ମନ୍ଥର ବିଜ୍ଞାପନ ଗାଡ଼ି । ଦୈନିକ ସାଢ଼େ ଦଶଟାରେ ଦୁଇଟି ସାଇକେଲରେ ଲଗାଲଗି ହୋଇ କୌଣସି ଅଫିସ ଉଦ୍ଦେଶ୍ୟରେ ଯୁବକ ଯୁବତୀଟିଏ ଯାଉଁ ଯାଉଁ ଏମିତି ଆଚରଣ କରୁଥାଆନ୍ତି ଯେ, ସେଥିରେ ତଳେ ଫାଟକ ଆଗରେ ଟୁଲ୍ ପକାଇ ବସି ନିଶ ଆଉଁସା ଆଉଁସି କରି ମହାକାଳ ଅତିକ୍ରମ କରି ଚାଲିଥିବା ଦରୁଆନ୍‌ଟି କୃତ୍ରିମ ଭାବରେ କାଶି ଉଠେ, କଦାଚିତ୍ ଫେରିବାଲା କିଶୋରଟିଏ ହୁଇସିଲ୍ ମାରିଦିଏ । ସେ ପଥରେ ପୁଣି ଜଣେ ଜଟାଜୁଟଧାରୀ, ବିଭୂତି-ବିମଣ୍ଡିତ ନିରାସକ୍ତ ପୁରୁଷ ବଶୀକରଣ, ଗ୍ରହଶାନ୍ତି ଇତ୍ୟାଦିର ସ୍ୱପ୍ନଲବ୍ଧ ଅବ୍ୟର୍ଥ କବଚ, ଚେରମୂଳି ଇତ୍ୟାଦି ଧରି ବିଦଗ୍ଧ ମାନବତାର ସେବାର୍ଥେ ପ୍ରାୟଶଃ ଯିବାଆସିବା କରନ୍ତି । ଟିକି ଝିଅଟିର ସୁଦୂରପ୍ରସାରୀ ଦୃଷ୍ଟି କିନ୍ତୁ କେଉଁଥିରେ ହେଲେ ବି ଚହଲିଯାଏ ନାହିଁ ।

ପଥର ବିପରୀତ ଦିଗରେ, ଅଦୂରରେ ଯେଉଁ କ୍ଷୁଦ୍ର ହୋଟେଲର ଦୁଇ ମହଲାରେ ଏକମାତ୍ର କୋଠରିଟି ଭଡ଼ା ନେଇ ମୁଁ ରହିଥାଏ, ସେଠାରୁ ସେଇ ଟିକି ଝିଅଟିକୁ ଦୀର୍ଘ ସମୟ ଧରି ଅବଲୋକନ କରିବାଟା ମୋର ନିଃସଙ୍ଗ ଜୀବନର ଏକ ପ୍ରୀତିକର ଅଭ୍ୟାସରେ ପରିଣତ ହୋଇଯାଇଥିଲା । ସରକାରୀ କଲେଜରୁ ଅବସର ଗ୍ରହଣ କରିବାପରେ ହିଁ ମୁଁ ସେଠାକୁ ସମ୍ପ୍ରତି

ଏକ ପ୍ରାଇଭେଟ ସାନ୍ଧ୍ୟ କଲେଜର ଅଧ୍ୟାପକ ରୂପେ ନିଯୁକ୍ତି ପାଇ ଆସିଥିଲି । ଲ୍ୟାଂଗଲାଣ୍ଡଠୁଁ ଏଲିଆଟ୍ ପର୍ଯ୍ୟନ୍ତ ବହୁ ପ୍ରସ୍ତୁତି ଜୀବନବ୍ୟାପୀ କରିଛି । ଅତଏବ ମଧ୍ୟେ ମଧ୍ୟେ ପିଲାଙ୍କର ଖାତା ସଂଶୋଧନ କରିବାଛଡା ଏଣିକି ପଢ଼ାପଢ଼ି କରିବାର ବା ଆଉ କିଛି କରିବାର ପ୍ରବୃତ୍ତି ନଥିଲା ।

ଦିବସବ୍ୟାପୀ ଅନେକ ଅଳସ ମୁହୂର୍ତ୍ତ ଧରି ମୁଁ ମୋ କୋଠରିର ବାତାୟନ ଭିତରୁ ଝିଅଟିକୁ ଅନାଇ ରହୁଥିଲି । ମଧ୍ୟେ ମଧ୍ୟେ ପରିବାରର ପରିଚାରିକା ଭଳି ବୋଧ ହେଉଥିବା ଜଣେ ମହିଳା ଆସି ତାକୁ ସସ୍ନେହ ଭିତରକୁ ଡ଼ାକି ନେଉଥିଲେ । କିନ୍ତୁ ସକାଳ ପ୍ରାୟ ଆଠଟା ପରେ ଓ ଉପର ଓଳି ତିନିଟା ପରେ ଝିଅଟି ପ୍ରତିଥର ଦୁଇ ତିନିଘଣ୍ଟା ଲେଖାଏଁ ସେଇଠି ଯେପରି ନିଶ୍ଚୟ ନିଶ୍ଚଳ ହୋଇ ରହିବ, ସେଥିପାଇଁ କିଏ ଯେପରି ତାକୁ ମନ୍ତ୍ରମୋହିତ କରି ଦେଇଥିଲା । ଥରେ ଥରେ ତାର ସେଇ ଏକାନ୍ତ କମନୀୟ ବଦନକୁ ଟିକିଏ ନିରୀକ୍ଷଣ କରି ଦେଖିବା ସକାଶେ ମୋର ଇଚ୍ଛା ପ୍ରବଳ ହେଲେ ମୁଁ ମୋର କୋଠରି ସମ୍ମୁଖର କ୍ଷୁଦ୍ର ବାରନ୍ଦାକୁ ବାହାରି ଆସୁଥିଲି। ଝିଅଟି ମୋ ଆଡ଼କୁ ମଧ୍ୟେ ମଧ୍ୟେ ଅନାଉଥାଏ । ଦୂରତ୍ୱ ତଥା ମୋର ବାର୍ଦ୍ଧକ୍ୟ-ପୀଡ଼ିତ ଦୃଷ୍ଟିର ମଳିନତା ସତ୍ତ୍ୱେ ମୁଁ ଦେଖୁଥିଲି, ବରଂ କୁହାଯାଇପାରେ ଯେ ଅନୁଭବ କରୁଥିଲି, ଝିଅଟିର ନୟନ ଯୁଗଳ ବଡ଼ ଉଦାସ । ତଥାପି ସେହି ଔଦାସ୍ୟ ତଳେ ଚାପି ହୋଇ ରହିଥିଲା ଯେଉଁ ସ୍ୱାଭାବିକ ସ୍ଫୁର୍ତ୍ତିର ସ୍ଫୁଲିଙ୍ଗ, ତାହା ଥରେ ଥରେ ଯିମିତି ତା'ର ପରିପାର୍ଶ୍ୱକୁ ଝଲସାଇ ଦେଉଥିଲା -ଥରେ ଥରେ, ଯେତେବେଳେ ଛୋଟ ପକ୍ଷୀଟିଏ ଫୁଲକୁଣ୍ଡ ସବୁ ଭିତର ଦେଇ ଡ଼େଇଁ ଡ଼େଇଁ ତା' ସମ୍ମୁଖକୁ ଚାଲି ଆସୁଥିଲା, ଅଥବା ଯେତେବେଳେ ପାର୍ଶ୍ୱବର୍ତ୍ତୀ ଘରର ପାଳିତ ପାତିମାଙ୍କଡଟି ଜଞ୍ଜିରରୁ କୌଣସି ପ୍ରକାରେ ମୁକୁଳି ଆସି ସେହି ବାରନ୍ଦାରେ ବସୁଥିଲା ଓ ସେ ରୂପ ଦର୍ଶନେ ଶଙ୍ଖୀ ବିଲେଇଟିଏ କ୍ରମାଗତ ଭାବରେ ଫୁଲିବାକୁ ଲାଗୁଥିଲା ।

କିନ୍ତୁ ସେ ସ୍ଫୁଲିଙ୍ଗର ସ୍ଫୁରଣ ହେଉଥିଲା ମୁହୂର୍ତ୍ତକ ସକାଶେ । ମୁଁ ଯେତେ ଆଗ୍ରହରେ ଝିଅଟିର ଆଚରଣରେ ଏଇ ବିରଳ ବ୍ୟତିକ୍ରମକୁ ଅପେକ୍ଷା କରୁଥାଏ ନା କାହିଁକି, ମୋ ଉପରେ ଆଖିପଡ଼ିଲେ ସେ ପୁଣି ତା'ର ବିଷଣ୍ଣ ଏକାଗ୍ରତା ଭିତରେ ନିମଜ୍ଜିତ ହୋଇଯାଏ; ଲେଉଟିଯାଏ ଏକ ସୁଦୂର ପୃଥିବୀକୁ, ଯା'ର ଏକମାତ୍ର ବାସିନ୍ଦା ସେ ନିଜେ। ଛାତ୍ର ଅବସ୍ଥାରେ, ତଥା ଅଧ୍ୟାପକ ଜୀବନର ପ୍ରଥମ ପର୍ଯ୍ୟାୟରେ, ମୁଁ ବରଂ ବିଭିନ୍ନ ସୌଖୀନ ଅଭିନୟ ଅନୁଷ୍ଠାନରେ ସର୍ବଦା ହାସ୍ୟ-ରସାତ୍ମକ ଭୂମିକାରେ ଅବତୀର୍ଣ୍ଣ ହେଉଥିଲି। ଅନ୍ୟ ଭିତରେ ମଜା ଉଦ୍ରେକ କରିବାଟା ଥିଲା ଦୁର୍ଭାଗ୍ୟ ବା ସୌଭାଗ୍ୟକ୍ରମେ ମୋ ଚେହେରାର ଜନ୍ମଗତ ବିଶେଷତ୍ୱ। ଅଥଚ ଝିଅଟି ମୋତେ ଦେଖି କିପରି ପାତିମାଙ୍କଡ଼ ସାନ୍ନିଧ୍ୟରୁ ଲାଭ କରିଥିବା ପ୍ରସନ୍ନତା ଟିକକ ହରାଇ ଦେଇପାରେ, ତାହା ମୋତେ କେବଳ ବିସ୍ମିତ ନୁହେଁ, ହତାଶମଧ୍ୟ କରୁଥିଲା । ଭାବୁଥିଲି, ବାର୍ଦ୍ଧକ୍ୟ ବୋଧହୁଏ ମୋ ଚେହେରାରେ ଆଣିଦେଇଛି ଅନାହୂତ ଗାମ୍ଭୀର୍ଯ୍ୟ ।

ଦିନେ ସାଢ଼େ ଦଶଟାରୁ ଏଗାରଟା ଭିତରେ ସାଇକେଲ ଚଢ଼ି, ଖାକି ପରିଚ୍ଛଦରେ ରାଜପଥର ବଙ୍କିମ ସୀମାରେ ଯେଉଁ ବ୍ୟକ୍ତିଟି ଆବିର୍ଭୂତ ହୁଏ, ତାକୁ ହିଁ ଦୁଇ ତିନି ଘଣ୍ଟା ଧରି ଝିଅଟି ଅପେକ୍ଷା କରିଥାଏ । ପୋଷ୍ଟମ୍ୟାନଟି ବିଭିନ୍ନ ଘର ଆଗରେ ଦ୍ୱିଚକ୍ରରୁ ଅବତରଣ କରି ଚିଠି ବଣ୍ଟା ବଣ୍ଟି କରି ଯେତେବେଳେ ସେଇ ଦୁଇମହଲା ପାଖକୁ ଆସେ, ସେତେବେଳେ ଝିଅଟି ପ୍ରାୟ ଶ୍ୱାସରୁଦ୍ଧ ଉତ୍କଣ୍ଠା ନେଇ ବାରନ୍ଦାର ଲୁହାବାଡ଼ ଉପରୁ ଝୁଲିପଡ଼ି ପ୍ରଶ୍ନକରେ, "ମୋ ପାଇଁ ଚିଠି ଅଛି ? ମୋ ନାମ ରୀନା !" ପୋଷ୍ଟମ୍ୟାନଟି ଈଷତ୍ ହସି ନାସ୍ତିସୂଚକ ହାତ ହଲାଇ ଚାଲିଯାଏ । ତା'ପରେ ଯେଉଁ ଦୀର୍ଘ ନିଃଶ୍ୱାସ ଛାଡ଼ି ଝିଅଟି ତାର ଗତି ପଥକୁ କେଇ ମୁହୂର୍ତ୍ତ ଅନାଇ ରହି ଘର ଭିତରକୁ ଧୀରେ ଧୀରେ ଅପସରିଯାଏ, ସେ ଦୃଶ୍ୟ ମୋତେ ବି କେମିତି ଉଦାସ କରିଦିଏ ଯଦିଓ ଟିକି ଝିଅଟି କାହାଠୁଁ ଚିଠିର ଅପେକ୍ଷା କରି ରହିଛି, ସେ ବିଷୟରେ ମୁଁ କିଛିହିଁ ଜାଣେ ନା । ସେ ଭିତରକୁ ଚାଲିଯିବାକୁ ଉଦ୍ୟତ ହେଲେ ମୁଁ ବି ମୋ କୋଠରି ଭିତରକୁ ଚାଲି ଆସୁଥିଲି ।

ଉତ୍କଣ୍ଠିତ ପ୍ରତୀକ୍ଷା ଓ ଅବଶେଷରେ ହତାଶ ଦୀର୍ଘନିଃଶ୍ୱାସର ଏଇ ଏକହିଁ ଦୃଶ୍ୟ ପୁନରାୟ ଅପରାହ୍ଣରେ ଦେଖିବାକୁ ପଡୁଥିଲା । ପ୍ରାୟ ତିନିଟା ବେଳଠୁଁ ଝିଅଟି ଆସି ଛିଡା ହୋଇ ରହୁଥିଲା - ସାଢ଼େ ଚାରିଟା ବେଳେ ପୋଷ୍ଟମ୍ୟାନ ସେ ଅଞ୍ଚଳ ପରିକ୍ରମା ଶେଷ କରି ଚାଲିଯିବା ପରେ ସେ ଘର ଭିତରକୁ ପଶିଯାଉଥିଲା - ଆଉ ମୁଁ ବି ଚାଲି ଆସୁଥିଲି । ହଁ - ବାରନ୍ଦାରେ ଦୀର୍ଘ ସମୟ ଛିଡ଼ାହୋଇ ରାଜପଥକୁ ଅନାଇବା ମୋର ବି କ୍ରମେ ଏକ ନିୟମିତ ଅଭ୍ୟାସରେ ପରିଣତ ହୋଇଯାଇଥିଲା । କହିବା ବାହୁଲ୍ୟ, ଚିଠି ପାଇଁ ମୋର ଅପେକ୍ଷା ନଥିଲା । ସେସବୁ ଆସୁଥିଲା କଲେଜ ଠିକଣାରେ ।ଏଇ ଅଭ୍ୟାସ ପଛରେ ରହିଥିଲା ଟିକି ଝିଅଟିକୁ ବାରମ୍ବାର ଦେଖିବାର ସୁତୀବ୍ର ଆକାଙ୍କ୍ଷା । ଝିଅଟି ମଧ୍ୟ କ୍ରମେ ଅଧିକରୁ ଅଧିକ ସମୟ ମୋ ଆଡ଼କୁ ଅନାଇ ରହିବାରେ ଅଭ୍ୟସ୍ତ ହୋଇପଡ଼ିଥିଲା । ଥରେ ଥରେ ମନେ ହେଉଥିଲା, ଯେମିତି ସେ ମୋରେ କିଛି ପଚାରିବାକୁ ଚାହେଁ, ଅଥଚ ତା'ର ସହଜାତ ସମ୍ଭ୍ରମବୋଧ ତାକୁ ବାଧା ଦେଉଛି । ସେ ଯାହାହେଉ, କ୍ରମେ ବୟସ ଓ ଅପରିଚୟର ସମସ୍ତ ବ୍ୟବଧାନ ସତ୍ତ୍ୱେ ଆମେ ଦୁହେଁ ପରସ୍ପର ଘନିଷ୍ଟ ହୋଇ ଉଠିଥିଲୁଁ ବୋଲି ମୋର ହୃଦ୍‌ବୋଧ ହେଉଥିଲା । ଆମ ଭିତରେ ଯିମିତି ଗଢ଼ିଉଠୁଥିଲା ଏକ ନିର୍ବାକ୍ ମମତା ଓ ସହାନୁଭୂତିର ବନ୍ଧନ ।

ବେଶ କିଛି ଦିନ ଏହିପରି ଗଡ଼ିଚାଲିଯିବା ଉତ୍ତାରୁ ଦିନକର ନିସ୍ତବ୍ଧ ଅପରାହ୍ଣରେ ମୋର କୋଠରିର ଦ୍ୱାର ସେପଟେ ଜଣେ କେହି ମୃଦୁ ସଙ୍କେତ ଦେବାରୁ ମୁଁ କବାଟ ଖୋଲିଦେଇ ଦେଖେ ତ ସେହି ସମ୍ମୁଖସ୍ଥ ଦ୍ୱିତଳ ହର୍ମ୍ୟର ଅତିକାୟ ଦରୁଆନ୍‌ଟି ସସଙ୍କୋଚ ଦଣ୍ଡାୟମାନ । ତା' ମୁହଁରେ ସପ୍ରତିଭ ସ୍ମିତହସ ଦେଖି ମୁଁ ଅନୁଭବ କଲି, ଲୋକଟିର ହିଂସ୍ର-ଦର୍ଶନ ନିଶ ହଳକ ହିଁ ତା'ର ସମୁଦାୟ ଚରିତ୍ର ନୁହେଁ । ମୁଁ ତାକୁ ଭିତରକୁ ଡ଼ାକିନେଲି । ସେ ମୋ ହାତକୁ ଖଣ୍ଡିଏ ଲଫାଫା ବଢ଼ାଇଦେଲା । ତହିଁ ଉପରେ ଠିକଣା ଲେଖାଥିଲା, "ରୀନା, କେଆର୍ ଅଫ୍..."

ଇତ୍ୟାଦି । ମୁଁ ଜିଜ୍ଞାସୁ ନୟନରେ ଦରୁଆନ୍ ଆଡ଼କୁ ଅନାଇଲେ ସୁଦ୍ଧା ନୀରବ ସ୍ମିତହସ ବ୍ୟତୀରେକ ଆଉ କିଛି ସାହାଯ୍ୟ ତାହାଠାରୁ ଅପାତତଃ ପାଇଲି ନାହିଁ । ଲଫାଫାଟି ଖୋଲାଥିଲା । ତହିଁ ମଧ୍ୟରୁ ନୀଳରଙ୍ଗର କାଗଜଟି ବାହାର କରି ଅଗତ୍ୟା ପଢ଼ିବାକୁ ଲାଗିଲି ।

ଛୋଟ ଚିଠିଟିଏ ଲେଖା ହୋଇଛି ଦୂରାନ୍ତର ଏକ ହସ୍‌ପିଟାଲରୁ । ବୁଝିଲି ରୀନା ନିକଟକୁ ପ୍ରବାସରୁ ତା'ର ଜନନୀ ଲେଖିଛନ୍ତି :

"ରୀନା,

ତୁ ଯଦି ମୋର ଏ ଚିଠି ଖଣ୍ଡିକ ପଢ଼ିପାରିବୁ, ତେବେ ମୋର ଲେଖି ଶିଖିଥିବା ସାର୍ଥକ ହେବ ବୋଲି ଜାଣିବି । ତୁ ମୋ ପାଇଁ କେତେ ମନ ଖରାପ କରୁଥିବୁ । ଏଠାରେ ମୋତେ ଆଉ ବେଶିଦିନ ରହିବାକୁ ପଡ଼ିବ ନାହିଁ ବୋଲି ଡ଼ାକ୍ତରମାନେ କହୁଛନ୍ତି । ତେବେ ଯେତିକି ଦିନ ରହିବି, ତୁ ସୁନା ପିଲାଟି, ମୋତେ ମୋଟେ ଝୁରିହେବୁ ନାହିଁ ।

ତୁ ଫୁଲ ତୋଳିବାକୁ କେତେ ଭଲପାଉ । ତୁ ଫୁଲକୁ ଭଲପାଉ ବୋଲି ମୁଁ ଫୁଲକୁ ଭଲ ପାଉଥିଲି । ଏଠାରେ ମୋ ଶେଯକଡ଼ର ଝରକା ସେପଟେ ସୁନ୍ଦର ବଗିଚାଟିଏ ଅଛି । ଆଜି ବଗିଚାଟି ଭାରି ଭଲ ଦେଖାଯାଉଛି । ବୋଧହୁଏ ବସନ୍ତ ଋତୁ ଆସିଗଲାଣି । ଆମ ବଗିଚାରେ କେତେ ଫୁଲ ଫୁଟିଥିବ । ତୁ ଏଥର ଆୟା ସହିତ ଫୁଲ ତୋଳିବୁ । ଆଗାମୀ ବସନ୍ତ ବେଳକୁ ପୁଣି ମୁଁ କାଖରେ ଧରି ତୋତେ ବଗିଚାଯାକ ବୁଲାଇବି । ଉଚ୍ଚ ଡ଼ାଳ ମାନଙ୍କୁ ହାତ ବଢ଼ାଇ ତୁ ଫୁଲ ତୋଳିବୁ ।

ମୁଁ ସବୁବେଳେ ତୋ କଥା ଭାବୁଛି । ତୋର ଯେଉଁ କେତେଖଣ୍ଡି ଫଟୋ ମୋ ନିକଟରେ ଥିଲା, ସେଗୁଡ଼ିକ ତ ସବୁବେଳେ ଦେଖୁଛି । କିନ୍ତୁ ତୋ ବାପା ଲେଖିଥିଲେ, ତୁ କୁଆଡ଼େ ଅଭିମାନରେ ଆଉ ଫଟି ଉଠାଇବାକୁ ଦେଉନାହୁଁ । ସୁନା ପିଲାଟି, ତୋର ଆଉ କେତେଖଣ୍ଡି ନୂଆ ଫୋଟୋ ଯିମିତି ମୁଁ ଅତିଶୀଘ୍ର ପାଏ । ବଦଳରେ ମୁଁ ତୋ ପାଖକୁ ପ୍ରତି ସାତଦିନରେ ଖଣ୍ଡିଏ ଖଣ୍ଡିଏ ଚିଠି ଲେଖୁଥିବି । ଅଭିମାନ କରିବୁ ନାହିଁ... ।"

ଚିଠିଟିର ତାରିଖରୁ ବୁଝିଲି, ତାହା ପ୍ରାୟ ତିନିମାସ ତଳେ ଲେଖା ହୋଇଛି । ପ୍ରତିଶ୍ରୁତି ଅନୁସାରେ ସେ ଚିଠିର ପରବର୍ତ୍ତୀ ଏଗାର ଖଣ୍ଡି ଚିଠିରୁ ଖଣ୍ଡିଏ ମଧ୍ୟ ଯେ ରୀନାର ହସ୍ତଗତ ହୋଇନାହିଁ, ତାହାର ସାକ୍ଷୀ ମୁଁ ସ୍ୱୟଂ ।

ପଢ଼ିସାରି ଦରୁଆନ୍ ମୁହଁକୁ ଅନାଇଲି । ସେହି ଦାନବଜାତୀୟ ମଣିଷଟିର ଆଖି ସେତେବେଳେ ଅଶ୍ରୁସଜଳ । ମୋର ବୁଝିବାକୁ ଅସୁବିଧା ହେଲାନାହିଁ । ରୀନା ତା'ର ଜନନୀ ଠାରୁ ଆଉ କେବେ ବି ଚିଠି ପାଇବ ନାହିଁ । ଡ଼ାକ୍ତରମାନେ ଠିକ୍ କହିଥିଲେ । ରୀନାର ଜନନୀଙ୍କୁ

ବେଶୀଦିନ ସେ ଆରୋଗ୍ୟ ନିକେତନରେ ରହିବାକୁ ପଡ଼ି ନ ଥିଲା । ରୀନାର ପିତା ବିଭବଶାଳୀ ବ୍ୟବସାୟୀ । କିନ୍ତୁ ବିତ୍ତଲବ୍ଧ ସମସ୍ତ ଆୟୋଜନ ଚିଠି ପାଇଁ ରୀନାର ବ୍ୟାକୁଳ ପ୍ରତୀକ୍ଷାକୁ ପ୍ରତିହତ କରିପାରିନାହିଁ ।

ସବୁ ବୁଝିଲି; କିନ୍ତୁ ବୁଝିପାରିଲି ନାହିଁ ମୋ ପାଖକୁ ବା କାହିଁକି ସେ ଦରୁଆନ୍‌ଟି ଚିଠି ଖଣ୍ଡିକ ନେଇ ଆସିଛି, କିଏ ପଠାଇଛି । ପ୍ରକୃତିସ୍ଥ ହୋଇ ଦରୁଆନ୍ ମୋତେ ବୁଝାଇଦେଲା । ରୀନା ସବୁଦିନେ ମୋତେ ମୋ ବସାର ବାରନ୍ଦାରେ ତାହାରି ଭଳି ପ୍ରତୀକ୍ଷାରତ ଥିବାର ଦେଖେ- ଏବଂ ଏ କଥା ମଧ୍ୟ ଦେଖେ ଯେ ମୋ ମା'ପାଖରୁ ମୋ ନିକଟକୁ ଚିଠି ଆସେନାହିଁ । ସେ ମୋ ପାଇଁ ବଡ଼ ଦୁଃଖ ପାଏ । କିନ୍ତୁ କ'ଣ ବା କରିବ ? ଶେଷକୁ ତା' ମାଆ ପାଖରୁ ପାଇଥିବା ଏକମାତ୍ର ଚିଠିଟି ସେ ମୋତେ ଦେଇଦେବା ନିମନ୍ତେ ସିଦ୍ଧାନ୍ତ କରିଥିଲା ।

ଅର୍ଦ୍ଧ ଶତାବ୍ଦୀ ତଳେ ମୁଁ ମୋର ମା'କୁ ହରାଇଥିଲି । ବୟସ ଓ ଅଭିଜ୍ଞତାର ପାଷାଣ ସ୍ତୁପ ଭିତରେ ପୋତି ହୋଇପଡ଼ିଥିବା ସେହି ବେଦନା ତଥା କୈଶୋର କାଳର କଳ୍ପନାରେ, ସ୍ୱପ୍ନରେ ତାକୁ ଫେରିବାଇବାର କେତେ କେତେ ବିଗତ କ୍ଷଣିକ ପୁଲକ- ସେସବୁର ସମନ୍ୱୟ ପ୍ରସୂତ ଏକ ଶିହରଣ ବିଦ୍ୟୁତ୍ ଭଳି ମୋ ଭିତରେ ଚମକିଗଲା ।

ଅଜ୍ଞାତସାରରେ ଚିତ୍କାର କରିଉଠିଲି, "ରୀନା ! ଟିକି ମାଆଟି ମୋର !"

( ଓଡ଼ିଶାର ବରେଣ୍ୟ କଥାକାର ଶ୍ରୀ ମନୋଜ ଦାସଙ୍କ ଲିଖିତ ଅନୁମତି ଦ୍ୱାରା ପ୍ରକାଶିତ )

ଚଳିତ ମାସରେ ଆମର ପାଠକ ମାନଙ୍କ ପାଇଁ ଆମେ ଦେଉଛୁ ଆଉ ଏକ ପ୍ରଶ୍ନ ।

**“ଭାରତ ଭୂମିରେ ଆସି ଆତଙ୍କଲୀଳା କରୁଥିବା ଆତଙ୍କବାଦୀମାନଙ୍କୁ ରାଷ୍ଟ୍ରୀୟ ସୁରକ୍ଷା ଦେଇ ବଞ୍ଚାଇ ରଖିବା କେତେଦୂର ଯୁକ୍ତିଯୁକ୍ତ ?”**

ଏହି ବିଷୟ ଉପରେ ଆପଣ ମାନଙ୍କ ମତାମତ ଆମ ପାଖକୁ ଇ-ମେଲ୍ ଦ୍ୱାରା ପଠାଇ ପାରିବେ କିମ୍ବା ଫେସ୍‌ବୁକ୍‌ର ଆମ ସଦସ୍ୟ ପୃଷ୍ଠାରେ ଦେଇ ପାରିବେ ।

E-Mail : aahwaan@gmail.com

http://www.facebook.com/jyoti.pattnaik



ଆସ ବୁଲିଯିବା ଆମ ଓଡ଼ିଶା

# ଭିତର କନିକା

ଯଦି ଆପଣ ଚାହୁଁଥାନ୍ତି ଓଡ଼ିଶାର ଅଭ୍ୟନ୍ତରୀଣ ସୌନ୍ଦର୍ଯ୍ୟ ଦେଖିବା, ତା'ହେଲେ ଭିତର କନିକା ଆପଣଙ୍କ ପାଇଁ ଏକ ଉନ୍ମୁକ୍ତ ପର୍ଯ୍ୟଟନସ୍ଥଳୀ ଭାବରେ ଉପଲବ୍ଧ। ଘଞ୍ଚ ଅରଣ୍ୟ, ଅଛୁଆଁ ବେଳାଭୂମି, ଅପରିଚିତ ପଶୁପକ୍ଷୀ, ଅସଂଖ୍ୟ ବୃହତ୍ କଛପ, କୁମ୍ଭୀର, ଦ୍ୱୀପ ଓ ଉପଦ୍ୱୀପମାଳା ଏବଂ ଚାରିପାଖରେ ସଂପୂର୍ଣ୍ଣ ଖାଁ ଖାଁ ନିରବତା ଏବଂ ପରିବେଶ ସହ ଐକ୍ୟତା।



ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରୁ ମାତ୍ର ୧୩୦ କିଲୋମିଟର ଦୂରରେ ପୂର୍ବତଟରେ ଅବସ୍ଥିତ ଏହି ପର୍ଯ୍ୟଟନସ୍ଥଳୀ ବଣ୍ୟସଂରକ୍ଷଣ ହେତୁ ୧୯୭୫ରେ ଅଭୟାରଣ୍ୟ ଭାବରେ ବିଜ୍ଞାପିତ ହୋଇଥିଲା ଏବଂ ୧୯୯୮ରେ ରାଷ୍ଟ୍ରୀୟ ବଣ୍ୟପ୍ରାଣୀ ଉଦ୍ୟାନ ଭାବରେ ଘୋଷିତ ହୋଇଥିଲା। ଦୀର୍ଘ ୬୫୦ ବର୍ଗ କିଲୋମିଟର ଅଞ୍ଚଳରେ ବ୍ୟାପ୍ତ ଏହି ଅଭୟାରଣ୍ୟରେ ୩୮୦ ବର୍ଗ କିଲୋମିଟର ଘଞ୍ଚ ଜଙ୍ଗଲ ଆଚ୍ଛାଦିତ, ଏଥିରେ ୧୧୫ କିଲୋମିଟର ବ୍ୟାପୀ ହେନ୍ତାଳବଣ ଅନ୍ତର୍ଭୁକ୍ତ। ଏହାର ବିଭିନ୍ନ ଦିଗରେ ବ୍ରାହ୍ମଣୀ, ବୈତରଣୀ ଓ ଧାମରା ନଦୀ ରହିଛି। ଏହା ପରିବେଶ ଦୃଷ୍ଟିରୁ ଏକ ଆଶ୍ଚର୍ଯ୍ୟ କହିହେବ।



ପରିବେଶକୁ ଉପଭୋଗ କରିବା ପାଇଁ ଇଚ୍ଛୁକ ପର୍ଯ୍ୟଟକ ମାନଙ୍କ ପାଇଁ ଏଠାରେ ଅନେକ କିଛି ରହିଛି। ଭାରତରେ ସୁନ୍ଦରବନ ପରେ ହେନ୍ତାଳ ବନ ପାଇଁ ପ୍ରସିଦ୍ଧ ଭିତରକନିକା ଅଭୟାରଣ୍ୟ ପ୍ରତିବର୍ଷ ଅସଂଖ୍ୟ ପ୍ରକୃତିପ୍ରେମୀଙ୍କୁ ଆକର୍ଷିତ କରିଥାଏ।

ବିଭିନ୍ନ ପ୍ରକାରର ସରିସୃପ ମାନଙ୍କ ପାଇଁ ପ୍ରସିଦ୍ଧ ଏଇ ଅଭୟାରଣ୍ୟରେ କୁମ୍ଭୀର, ସାପ, ଗୋଧି, ଅହିରାଜ, ବୋଡା ଆଦି ବିଭିନ୍ନ ପ୍ରକାରର ସରୀସୃପ ଦେଖାଯାଆନ୍ତି। ନଦୀ ଅବବାହିକାର ବାଲୁକାରେ ନିର୍ମିତ ଦୁଇଟି ଦ୍ୱୀପ ଡାଙ୍ଗମାଳ ଓ ଏକକୂଳରେ ସରୀସୃପ ସମେତ, ମାଙ୍କଡ଼, ଚିତାହରିଣ, ସାମ୍ବାର, ଏବଂ ଶଙ୍ଖୁଆ ପ୍ରଜାତିର ଧଳା କୁମ୍ଭୀର ମଧ୍ୟ ଦେଖାଯାଏ।



ବଗଗହନ ଓ ସାରିବଣରେ ବିଭିନ୍ନ ପ୍ରଜାତିର ପ୍ରାୟ ୧୭୦ ପ୍ରକାରର ପକ୍ଷୀ ଦେଖାଯାଆନ୍ତି । ବଗ, ସାରସ, ଇଗଲ୍, ବାଲିଚଢ଼େଇ, ସମୁଦ୍ରି ପକ୍ଷୀ ଆଦି ଏଠାରେ ବହୁ ସଂଖ୍ୟାରେ ଦେଖାଯାଆନ୍ତି । ଡାଙ୍ଗମାଳଠାରୁ ଡ଼ଙ୍ଗାରେ ବସି ସେହିସ୍ଥାନକୁ ଯିବାକୁ ହୁଏ, ଏବଂ ଦିନରେ ସାଢେ ନ'ଟାରୁ ଅପରାହ୍ନ ସାଢ଼େ ଚାରିଟା ପର୍ଯ୍ୟନ୍ତ ସେଠାରେ ପକ୍ଷୀମାନଙ୍କୁ ଦେଖିବା ସୁବିଧା ରହିଛି ।



ଡାଙ୍ଗମାଳଠାରୁ ସାଢେ ତିନି କିଲୋମିଟର ଦୂରରେ ରହିଛି ଗହୀରମଥା ସମୁଦ୍ର ବେଳାଭୂମି, ଏହିଠାରେ ପ୍ରତିବର୍ଷ ଲକ୍ଷ ଲକ୍ଷ ଅଲିଭ୍ ରିଡ୍‌ଲେ କଇଁଛ ଆସି ଅଣ୍ଡା ଦେଇଥାନ୍ତି । ସେଠାକୁ ଯିବାପାଇଁ ଡ଼ଙ୍ଗାରେ ଯିବାକୁ ହୁଏ । ସକାଳ ସାଢ଼େ ନ'ଟାରୁ ସଂଧ୍ୟା ସାଢ଼େ ଛଅଟା ପର୍ଯ୍ୟନ୍ତ ସେଠାରେ ପର୍ଯ୍ୟଟକ ମାନଙ୍କୁ ରହିବାକୁ ଅନୁମତି ଦିଆଯାଏ ।

ଭିତରକନିକା ଯିବାପାଇଁ ଆପଣଙ୍କୁ ରାଜନଗର ବିଭାଗର ବନପାଳଙ୍କ ଠାରୁ ଅନୁମତି ଆଣିବାକୁ ହେବ କିମ୍ବା ସହକାରୀ ବନସଂରକ୍ଷକ ଚାନ୍ଦବାଲିଙ୍କ ସହ ଯୋଗାଯୋଗ କରି ପାରିବେ ।

## ଭିତରକନିକା ଯିବେ କେମିତି :-

ଭିତରକନିକାରେ ପହଞ୍ଚିବାପାଇଁ ଆପଣ କେବଳ ଜଳପଥର ବ୍ୟବହାର କରି ପାରିବେ । ଉଭୟ ଚାନ୍ଦବାଲି ଓ ରାଜନଗର ଠାରୁ ମୋଟର ବୋଟରେ ବସି ଆପଣ ଭିତର କନିକାରେ ପ୍ରବେଶ କରିପାରିବେ ।

ଚାନ୍ଦବାଲି- ଭଦ୍ରକଠାରୁ ୫୦ କିମି ଏବଂ ଭୁବନେଶ୍ୱରଠାରୁ ୧୯୦ କିମି ।

ରାଜନଗର- କେନ୍ଦ୍ରାପଡ଼ାଠାରୁ ୩୦ କିମି ଏବଂ ଭୁବନେଶ୍ୱରଠାରୁ ୧୩୦ କିମି ।

ଗୁପ୍ତି - ରାଜନଗର ଠାରୁ ୨୫ କିମି ।



ଚାନ୍ଦବାଲି ଓ ରାଜନଗର ଠାରୁ ଭିତରକନିକା ଯିବାପାଇଁ ଆପଣଙ୍କୁ ତିନିଘଣ୍ଟା ସମୟ ଲାଗିପାରେ । ଉଭୟ ଚାନ୍ଦବାଲି ଓ ରାଜନଗର ଯିବାପାଇଁ

ଭୁବନେଶ୍ୱରରୁ ବସ ସେବା ଉପଲବ୍ଧ ରହିଛି ।



ନିକଟସ୍ଥ ରେଳ ଷ୍ଟେସନ :-

ଭଦ୍ରକ- ଚାନ୍ଦବାଲିଠାରୁ ୫୦ କିମି ।

ବାଲେଶ୍ୱର - ଚାନ୍ଦବାଲିଠାରୁ ୧୨୦ କିମି ।

କଟକ - ଚାନ୍ଦବାଲିଠାରୁ ୧୧୦ କିମି ।

ଭୁବନେଶ୍ୱର - ଚାନ୍ଦବାଲିଠାରୁ ୧୯୦ କିମି ଏବଂ ରାଜନଗର ଠାରୁ ୧୩୦ କିମି ।

ନିକଟସ୍ଥ ବିମାନବନ୍ଦର :-

ଭୁବନେଶ୍ୱର ଏବଂ କୋଲକାତା

ରହିବେ କେଉଁଠି :-

ଅରଣ୍ୟନିବାସ, ଚାନ୍ଦବାଲି

ବିଶେଷ ସୂଚନା : -

ଆପଣଙ୍କ ଜିଲ୍ଲାରେ ଥିବା ଯେକୌଣସି ଦର୍ଶନୀୟ ସ୍ଥାନ ବିଷୟରେ ଲେଖି ପଠାନ୍ତୁ । ଆମେ ଆହ୍ୱାନର ଆଗାମୀ ସଂସ୍କରଣରେ ତାହା ପ୍ରକାଶିତ କରିବୁ । ଲେଖା ସହିତ ଫୋଟୋ ମଧ୍ୟ ପଠାଇଲେ ତାହା ପ୍ରକାଶ କରିବୁ ।

ନିଜ ଲେଖା ସହିତ ପରିଦର୍ଶନ ସ୍ଥଳର ସମ୍ୟକ ଇତିହାସ, ଭୂଗୋଳ ଇତ୍ୟାଦି ମଧ୍ୟ ଲେଖି ପଠାଇଲେ ତାହା ପ୍ରକାଶ କରାଯିବ ।

ପର୍ଯ୍ୟଟନ ସ୍ଥଳ ନିକଟରେ ପହଞ୍ଚିବା ଓ ରହିବାର ସମସ୍ତ ବ୍ୟବସ୍ଥା ବିଷୟରେ ସବିଶେଷ ବିବରଣୀ ଲେଖି ପଠାଇବା ଅତ୍ୟନ୍ତ ଜରୂରୀ । ଏହା ଫଳରେ ଆପଣଙ୍କ ଜିଲ୍ଲାକୁ ପର୍ଯ୍ୟଟନ ବଢ଼ିବା ସହିତ ସ୍ଥାନୀୟ ଅଧିବାସୀଙ୍କୁ ରୋଜଗାରର ପନ୍ଥା ମିଳିବ ।

ଅଧିକ ବିବରଣୀ ନିମନ୍ତେ ଆମ ସହ ଯୋଗାଯୋଗ କରନ୍ତୁ ।



# ସାଂପ୍ରତିକ ସମାଜରେ ଗାଁ

ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ଗାଁ ଆଉ କ'ଣ ଗାଁ ହୋଇ ଅଛି ? ସବୁ ବଦଳି ଗଲାଣି । ଗାଁ ଦାଣ୍ଡରେ ଆଉ ବାଲିଧୁଳି ଖେଳ ଦେଖାଯାଉନି, ଘର ଚଟିଆର ଚିଁ ଚିଁ ଶବ୍ଦ ଶୁଣାଯାଉନି, ବର୍ଷାଦିନେ ଚାଳରୁ ପଡୁଥିବା ପାଣିରେ ହେଉଥିବା ଜଳତରଙ୍ଗ ଏବେ ହଜିଗଲାଣି, ସ୍କୁଲ୍ ପିଣ୍ଡାରେ ବସୁଥିବା କ୍ଲାସରେ ଏବେ ଟେବୁଲ୍ ଚେୟାର୍ ପଡ଼ିଗଲାଣି । ଗାଁ ମାଷ୍ଟ୍ରେ ଏବେ ସାଇକେଲ୍ ଛାଡ଼ି ସ୍କୁଟରରେ ଆସିଲେଣି । ଘରେ ଘରେ ବିଜୁଳି ବତୀର ଉଜ୍ଜ୍ୱଳ ଆଲୋକ ବ୍ୟାପୀ ଗଲାଣି, ହେଲେ ଗାଁ ବୋଲି ଆଉ କିଛି ନାହିଁ । ଗାଁ ନାଟ କରିବା କଥା ଦୂରେ ଥାଉ ଦେଖିବା ପାଇଁ ଦର୍ଶକ ଅଭାବ ହେଲେଣି, ଘରେ ଘରେ ଶାଶୁବୋହୁ କଳି ଦେଖିବାପାଇଁ ଟିଭି ଲାଗିଲାଣି । ହେଲେ ମାତ୍ର କେଇ ବର୍ଷ ତଳେ ଏଇ ଗାଁ ରେ ଥିଲା ଏକ ଅଛୁଆଁ ଗାଁତ୍ୱ । ଯାହାର ନିଶାରେ ସବୁଲୋକ ଥିଲେ ଚୁର୍ । ଆଜି ସମସ୍ତେ ସମସ୍ତଙ୍କଠାରୁ ଦୂର୍ । ହେ ହେ ହେ । ଯୁଗ ବଦଳୁଛି । ଭଲ କଥା । କାହା ଘରେ କଣ ହେଲା ସେଥିରେ ମୋର ଯାଏ ଆସେ କ'ଣ? ମୁଁ ଭଲ ତ ସବୁ ଭଲ । ଗାଁରେ ଏଇ ପରଂପରାର ପ୍ରାଧାନ୍ୟ ସେଇଦିନୁ ବଢିଗଲା ଯେଉଁଦିନୁ ଆମ ପିଲେ ପଇସା ରୋଜଗାର୍ କରିବାପାଇଁ ବିଦେଶ ଯିବା ଆରମ୍ଭ କଲେ । ଘରେ ଘରେ ପିଠାପଣାର ଯେଉଁ ଉନ୍ନତ ପରଂପରା ଥିଲା ତାକୁ କେକ୍ ଖାଇଦେଇ ବୋତଲ ବନ୍ଦ କଳା ଆଉ ନାଲି ପାଣି ପିଇ ଦେଇ ପାଳିଲେ ।

ସକାଳୁ ସକାଳୁ ଗାଁ ଦାଣ୍ଡରେ ହଳ ଲଙ୍ଗଳ ଆଉ ତା'କୁ ନେଇ ଯାଉଥିବା ଚଷା ହଃ ହଃ ଶବ୍ଦ ସପନ ହେଲାଣି, ଦ୍ୱାରେ ଦ୍ୱାରେ ଟ୍ରାକ୍ଟର ପାୱାର୍ ଟିଲର୍ ଆସିଲାଣି । ଚଷା ଗୀତ ଏବେ ଶୁଭୁନି ଆଉ, ସକାଳୁ ସକାଳୁ ରାବୁନି କାଉ । ଗାଁ ବରଗଛରେ ପିଲାମାନେ ଦୋଳି ଖେଳୁନାହାନ୍ତି, ସକାଳୁ ଉଠି ସ୍କୁଲ୍ ଯାଉଛନ୍ତି, କାନ୍ଧରେ ବସ୍ତାନି ଧରି । ଶିଶୁ ମନ୍ଦିରଠୁଁ କନ୍‌ଭେଣ୍ଟ୍ ସ୍କୁଲ୍ ସବୁ ଏଇଠି ହେଲାଣି । କାହା କାହା ଘରେ ପିଲାମାନେ ରାଗରେ ଇଂରାଜୀରେ ୟୁ ଆର୍ ଏ ଫୁଲ୍ କହି ବୋପା ମା'କୁ ଗାଳି ବି ଦେଲେଣି । ଓଃ ଗାଳି ଶୁଣି ରଘୁ ଭାରୀ ଖୁସି, ମୋ ପୁଅ ଇଂରେଜ୍ କହି ଯାଉଛି ବରଷି ।

ଗାଁ ମଝି ମଣ୍ଡପ ଉପରେ ଏବେ ବି ହୁଏ ଭିଡ଼, ମାସ ମଝିଆକୁ ବୁଢାବୁଢୀଙ୍କୁ ଭତ୍ତା ଦେବା ପାଇଁ ଲାଗୁଥାଏ ଲମ୍ବା ଲାଇନ୍ । ବିନା ପଇସାରେ ଲାଇଟ୍ ଜାଳିଲେ ଜେଲ୍ ଯିବ, ଏଇଟା ନୂଆ ଆଇନ୍ । ଗାଁ କରଣେ ଆଉ ଗାଁ ର ମୁରବି ହୋଇ ନାହାନ୍ତି, କଳି କଜିଆ ହେଲେ, ଜେଲ୍ ଥାନା ଆଉ କାନୁନ ଆଇନ୍ ବୋଲି ଲୋକେ ଜାଣିଲେଣି । ଭଲ କଥା । ପୁରୁଣା ପୋଷ୍ଟ ଅଫିସ୍ ଏବେ ବି ରହିଛି, ହେଲେ ଲୋକେ ବ୍ୟାଙ୍କରେ ଖାତା ଖୋଲିଲେଣି । ନଖୀନାନୀ ଆଉ ବାସନ୍ତୀ ଭଳିଆ ହାତମୁଠା କେତେଜଣ ଯାହା ପୋଷ୍ଟ ଅଫିସରେ ଟଙ୍କା ରଖୁଛନ୍ତି, ବାକି ସବୁ ସୁରାଟ୍ ପଇସାରେ ଏବେ ଧନୀ ।

ସଂଜବେଳେ କୋଠଘରେ ଆଉ ମୃଦଙ୍ଗ ବାଜୁନି, ମାଇକ୍‌ରେ ବାଜୁଛି ଆଧୁନିକ ଭଜନ ।

ରାଧା କାହିଁକି ଗାଧୋଇଗଲା ବୋଲି ଗାଇ ଗାଇ ଆମ ପିଲେ ଭକ୍ତି ଗଦ ଗଦ ହେଉଛନ୍ତି, ଭିକାରୀ ବଳଙ୍କ ଅବସ୍ଥା ପ୍ରକୃତରେ ଭିକାରୀ ହୋଇଗଲାଣି । ପାଲା ଦାସକାଠିଆ କ'ଣ ଆମ ପିଲେ ଜାଣୁ ନାହାନ୍ତି, ସରକାର ତଥାପି ସେଇ ଦାସକାଠିଆ କରେଇ ଲୋକଙ୍କୁ ଚାଷବାସ ବିଷୟରେ ବୁଝେଇବା ପ୍ରୟାସ କରୁଛନ୍ତି ସତ ହେଲେ ଦେଖିବାପାଇଁ ଲୋକ ନାହାନ୍ତି, କାଳେ ସଂଜବେଳେ ଦେଶ ଦୁନିଆର ଖବର୍ ଦେଖିବାପାଇଁ ଟିଭି ଆଗରେ ବସିଯାଉଛନ୍ତି ।

ଗାଁ ତୁଠରେ ଆଉ ଗହଳି ନାହିଁ, ସବୁ ଘରେ ଘରେ ବାଥ୍ ରୁମ୍ ହେଲାଣି । ଭଲ କଥା । ପରିଷ୍କାର ପରିଚ୍ଛନ୍ନତା ଦ୍ୱାରା ଆମେ ନିରୋଗୀ ରହିପାରିବା । ବାସ୍ ଯାହା ସଂଜ ସକାଳେ ତୁଠରେ ବସି କଥାବାର୍ତ୍ତା ହେଇ କିଏ କାହାର୍ କାମରେ ଅସୁଥିଲେ ଏବେ ଆଉ ସେ ସବୁ ନାହିଁ । ଗାଁରେ ବାହାଘର ହେଲେ ପୁରା ଗାଁ ମାତି ଉଠୁଥିଲା, ଆଜିକାଲି କାହିଁକି କେଜାଣି ଆଉ ସେ ସବୁ ଲାଗୁନି ।

ତେଣେ ସହରରେ ବି ସେଇ ଏକ ଅବସ୍ଥା । ଧାଡ଼ି ଧାଡ଼ି ଘର କୁଆଡ଼େ ଗଲା, ଏବେ ସବୁ ଘର ଛାଡ଼ି ଛାଡ଼ି ହେଲା । ସରକାର ନୂଆ ନିୟମ କରିଛନ୍ତି, ସବୁ ଘର ମଧ୍ୟରେ ଫାଙ୍କ୍ ରହିବା ଆବଶ୍ୟକ, କେଜାଣି କାହିଁକି ? ଚୋର ମାନଙ୍କୁ ସହଜ ହେବବୋଲି ପରା ! ଯିଏ ଯାହା ଘରେ ରହି ରହି ଭୟରେ ଅତିଷ୍ଠ ହେଲେଣି । ଏକା ଏକା ରହିବାକୁ ନିର୍ଭୟ ମଣୁନାହାନ୍ତି କେହି, ତେଣୁ କେହି କେହି ଆପାର୍ଟମେଣ୍ଟରେ ରହିଲେଣି । ଯେଉଁ ଗାଁକୁ ସେମାନେ ଦେଖିଲେ ନାକ ଟେକୁଥିଲେ ଏବେ କୁଆଡ଼େ ସେମାନେ ଆପାର୍ଟମେଣ୍ଟରେ ଗୋଟେ ଗାଁ ବସେଇ ଦେଲେଣି ।

ଏଠି ସବୁ ଘର ଲାଗିଲାଗି, ଏକାଠି ପୂଜାପର୍ବ ଜାନିଯାତରା କରୁଛନ୍ତି, କାହା ପୁଅର ଜନ୍ମଦିନ ତ କାହା ଝିଅର ବାହାଘର ସବୁ ଏକାଠି ପାଳୁଛନ୍ତି । ଅବଶ୍ୟ ସବୁଘରକୁ ବେଭାର୍ ଦେଇ ଦେଇ କେହି କେହି ବିରକ୍ତ ବି ହେଲେଣି । ମାସରେ ଅନ୍ତତଃ ଦଶଟା କିଛି ନା କିଛି ଘଟଣା ଘଟୁଛି, ବାର୍ଥ୍ ଡ଼େ, ଆନିଭର୍ସାରୀ, ମ୍ୟାରେଜ୍ ଏମିତି କେତେ କଣ, ଅନ୍ୟୁନ ଦୁଇଶହ ଦିଆଯିବାର୍ ନିୟମ ହୋଇଛି । ଚାକିରୀରୁ ଅବସର ପରେ ସେଇ ଆପାର୍ଟମେଣ୍ଟରେ ଘର କରିଥିବା ପଣ୍ଡା, ଦାସ, ମହାରଣା ଖାଲିଟାରେ ମାସକୁ ମାସ ଦୁଇରୁ ତିନି ହଜାର ଦେଇ ଦେଇ ନୟାନ୍ତ ହେଲେଣି, ହେଲେ ବଞ୍ଚିବାର ଉପାୟ ନାହିଁ । ଏବେ ସେମାନଙ୍କୁ ମନେ ପଡୁଛି ଗାଁ, ହେଲେ ଗାଁ କେଉଁଠି ?

ସମୟ ଗୋଟିଏ ଚକ୍ରରେ ବୁଲୁଥିବାର ଦୃଶ୍ୟ ମୁଁ ଦେଖିଥିଲି ଦୂରଦର୍ଶନରେ ମହାଭାରତ ଧାରାବାହିକରେ । ହରିଶ୍ ଭିମାନୀଙ୍କ ଗୁରୁଗମ୍ଭୀର ସ୍ୱରରେ 'ମେଁ ସମୟ ହୁଁ' ଶୁଣି ଶୁଣି କଣ୍ଠସ୍ଥ ବି କରିଦେଇଥିଲି, ହେଲେ ସମୟ ଯଦି ଚକ୍ର ତା ହେଲେ ସବୁ ଜିନିଷ ପୁଣି ଫେରିଆସିବ କି ? ପୁଣି ଗାଁର ସେ ଶାନ୍ତ ନିରୀହତା ଆମେ ଦେଖିପାରିବା କି ? ସମୟ କେବେ ଆସିବ କିଏ ଜାଣେ, ହେଲେ ଆଖିରେ ଆଖିଏ ସ୍ୱପ୍ନ ବୁଣିଦେଇଛି, ସମ୍ଭବତଃ ଅନେକ ସେମିତି ଭାବୁଥାଇ ପାରନ୍ତି । ସମୟ ! ଓଃ ସମୟ !



# ଜଣେ ମେଧାବୀ ଛାତ୍ରଙ୍କ ସହ ସାକ୍ଷାତକାର

ଡ଼ଃ କୁଳାଙ୍ଗାର

ବନ୍ଧୁଗଣ ଆଜି ଆମ ପାଖରେ ଅଛନ୍ତି ଜଣେ ମେଧାବୀ ଛାତ୍ର । ଆସନ୍ତୁ ତାଙ୍କୁ ଭେଟିବା ଏବଂ କଥାବାର୍ତ୍ତା ହେବା ।

ପ୍ରଶ୍ନ - ଆଚ୍ଛା ! ଆପଣଙ୍କର ଏ ସଫଳତା ପଛରେ କାହାର ହାତ ଅଛି ?

ଉତ୍ତର - ବହୁତ ଲୋକ । ଏଇ ଯେମିତି ଆମ ପଡ଼ୋଶୀ ଯାହାଙ୍କ ସହ ପ୍ରତିଯୋଗିତା କରି ମୋର ମମି ମୋତେ ଟପ୍ପର ହେବା ପାଇଁ ଏକ ରକମ ବାଧ୍ୟକଲେ । ଆମର ମାମୁଁ, ପିଉସୀ, ଅଙ୍କଲ୍ ଯେଉଁମାନେ ପରୀକ୍ଷା କେନ୍ଦ୍ରର ପାଚେରୀ କଡ଼ରେ ଠିଆ ହୋଇଥିଲେ ।

ପ୍ରଶ୍ନ - ଆଉ ଆପଣଙ୍କ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଓ ଶିକ୍ଷକଗଣ ?

ଉତ୍ତର - ସେମାନେ ସମସ୍ତେ ବର୍ଷର ଅଧିକାଂଶ ଦିନ ଦରମା ଓ ଅନୁଦାନ ପାଇଁ ରାଜଧାନୀରେ ଧର୍ମଘଟ ଓ ବିକ୍ଷୋଭ ପ୍ରଦର୍ଶନରେ ବ୍ୟସ୍ତ ରହୁଥିଲେ ।

ପ୍ରଶ୍ନ - ଆପଣ ଦିନକୁ କେତେ ଘଣ୍ଟା ପରିଶ୍ରମ କରୁଥିଲେ ଏବଂ କ'ଣ ସବ୍ ପ୍ରସ୍ତୁତି ଗ୍ରହଣ କରିଥିଲେ ?

ଉତ୍ତର - ଦିନକୁ ପାଖାପାଖି ଗୋଟାଏ ଘଣ୍ଟା ଟେଷ୍ଟ ପେପରରୁ ଉତ୍ତର ଚୟନ କରି ଚିରିବାରେ, ଦି'ଘଣ୍ଟା ଦୋକାନ ଯାଇ ମାଇକ୍ରୋ ଜେରକ୍ସ୍ କରିବାରେ, ଦି'ଘଣ୍ଟା ଏ ସବୁକୁ କ୍ଷୁଦ୍ରାତିକ୍ଷୁଦ୍ର ଭାଙ୍ଗିବାରେ, ଏକ ଘଣ୍ଟା ପ୍ୟାକିଂ ଏବଂ ଏକ ଘଣ୍ଟା ଦେହର ବିଭିନ୍ନ ଜାଗାରେ ଏ ସବୁକୁ ମୃତୟନ କରିବାରେ; ଏମିତି ଦିନକୁ ସାତ ଆଠ ଘଣ୍ଟା ପରିଶ୍ରମ କରୁଥିଲି । ଏହାଛଡ଼ା ପରୀକ୍ଷା ପାଇଁ ବିଶେଷ ପ୍ୟାକେଟ୍ ବାଲା ପ୍ୟାଣଟ୍ସାର୍ଟ୍. ଜୋତା, ବେଲ୍ଟ ଆଦି ପ୍ରସ୍ତୁତ କରିଥିଲି ।

ପ୍ରଶ୍ନ - ଆପଣ ମୂଲ୍ୟାୟନ ରେ ସନ୍ତୁଷ୍ଟ କି ?

ଉତ୍ତର - ହଁ, ଆମ ଡ଼ାଡ଼ି ଶିକ୍ଷା ବିଭାଗରେ ଥିବାରୁ ମୋର ଖାତା ଦେଖିଥିବା ସମସ୍ତ ପରୀକ୍ଷକଙ୍କୁ ମୁଁ ଜାଣିଛି । ସେମାନଙ୍କ ଭିତରୁ ଅଧିକାଂଶ ଭଦ୍ରଲୋକ । ଜଣେ ଦିଜଣ ଅବାଗିଆ ଥିଲେ କିନ୍ତୁ ମାତ୍ର କେତେଟା ଫୋନ୍ କଲ୍‌ରେ ଭଦ୍ର ହୋଇଗଲେ ।

ପ୍ରଶ୍ନ - ଆପଣ ଭବିଷ୍ୟତରେ କ'ଣ ହେବାକୁ ଲକ୍ଷ୍ୟ ରଖିଛନ୍ତି ?

ଉତ୍ତର - ପ୍ରଥମ ଲକ୍ଷ୍ୟ ଆଇଏଏସ୍ । ଏହାଦ୍ୱାରା ଡାଡ଼ିଙ୍କର ପ୍ରମୋଶନ ଏବଂ ବଦଳିରେ ଅସୁବିଧା ରହିବ ନାହିଁ । ଆଇଏଏସ୍ ନ ହେଲେ ଡ଼ାକ୍ତର ହେବି, ଏହାଦ୍ୱାରା ପରୀକ୍ଷା ସେଣ୍ଟର୍ ପାଚେରୀ ଡ଼େଇଁଲା ବେଳେ ମାମୁଁଙ୍କର ଭଙ୍ଗାଯାଇଥିବା ଗୋଡ଼ ସଜାଡ଼ି ପାରିବି । ଯଦି ଡ଼ାକ୍ତର ବି ନପାଇଲି ଚିନ୍ତାନାହିଁ ରାଜନୀତି କରିବି ।



# ସଫଳ ଯୋଜନା

ବିଦ୍ୟାଧର ପଣ୍ଡା

୨୦୫୦ ମସିହା । 'ଧନୀ ଓଡ଼ିଶା' ଦଳ ବିଧାନସଭା ନିର୍ବାଚନ ଜିତିଲା । ବିପୁଳ ବିଜୟ ପଛରେ ସେଥର ଦଳର ଗରିବ ହଟାଅ ସ୍ଲୋଗାନ୍‌ଟା ବେଶ୍ କାମ ଦେଇଥିଲା । ଖୋଦ ସଭାପତି ଶ୍ରୀମାନ୍ ଭାଇରସ୍‌ଙ୍କ ମୁଣ୍ଡରୁ ଏଇ ଚମତ୍କାର ସ୍ଲୋଗାନ୍‌ଟି ବାହାରିଥିଲା । ଟେଲି କନ୍‌ଫେରେନ୍ସ ମାଧ୍ୟମରେ ବରିଷ୍ଠ ନେତାମାନଙ୍କ ସହ ବିଚାର ବିମର୍ଷ ହୋଇଥିଲା । ସେମାନେ କହିଥିଲା, 'ବାଃ ବାଃ' । ସାରା ରାଜ୍ୟରେ ନେଟୱାର୍କ ବିଛାଇ ଦିଆଗଲା । ଗରିବ ହଟାଣ ଅଭିଯାନ ପାଇଁ ଇ-ମେଲ୍/ଏସ୍‌ଏମ୍‌ଏସ୍ ଜରିଆରେ କୋଟି କୋଟି ବାର୍ତ୍ତା ଗଲା । ନାହିରେ ତେଲ ଦେଇ ଶୋଇଥିବା ଶାସକ ଦଳର ହେଲା ନିର୍ଘାତ ଚିତ୍‌ପଟାଙ୍ଗ । ସଫଳତାର ହାୱାରେ ବର୍ଷେ ବିତିଗଲା କେମିତି ଜଣା ପଡ଼ିଲା ନାହିଁ । ନିଜ ସଫଳତାର ଢୋଲ ପିଟିବା ସମୟ ଆସିଲା ।

୨୦୫୧ ମାର୍ଚ୍ଚ । 'ଧନୀ ଓଡ଼ିଶା' ସରକାରର ବର୍ଷ ପୂର୍ତ୍ତି ଉତ୍ସବ ।ମୁଖ୍ୟମନ୍ତ୍ରୀ ଓ ସବୁ କ୍ୟାବିନେଟ୍ ମନ୍ତ୍ରୀ ମଞ୍ଚ ଉପରେ । ଆଗଧାଡ଼ିରେ ନିଜ୍ ନିଜ ଲ୍ୟାପଟପ୍‌ମାନ କୋଳେଇ ଗଣମାଧ୍ୟମ ପ୍ରତିନିଧିମାନେ ଅଙ୍ଗୁଳି ଚଳାଇବାରେ ଲାଗିଥାନ୍ତି । ଅର୍ଥମନ୍ତ୍ରୀ ଶ୍ରୀ ପ୍ରୋଗ୍ରାମର୍ ମଞ୍ଚ ଉପରେ ଦଳ ଓ ସରକାରଙ୍କର ସଫଳତାର ଫାଇଲ୍ ଖୋଲୁଥାନ୍ତି । ବିଶାଳାକୃତି ୧୦୦ ଫୁଟିଆ ଏଲସିଡ଼ି ପରଦାରେ ଡିସ୍‌ପ୍ଲେ ଚାଲିଥାଏ । ଫୋଲ୍‌ଡେବଲ୍ ଚକମକିଆ ଚଉକିରେ ବସିଥାନ୍ତି ଆମନ୍ତ୍ରିତ ଜନତା । ସୁବିଧା ଥାଏ ଯେମିତିକି ମନ କଲେ ଶୋଇହେବ ସେଥିରେ । ମନ୍ତ୍ରୀ, ନେତା, ଚାମଚା ଓ ଜନତାଙ୍କ ଗହଳି ହୋଇଥାଏ । ହେଲେ ସେମାନଙ୍କ କାର୍ ୧୦ ଗୁଣ ସ୍ଥାନ ମାଡ଼ି ବସିଥାଏ । ସଫଳତାର ଚର୍ବିରେ ସରକାରୀକଳ ଫୁଲି ଉଠିଥାଏ ।

ବର୍ଷକ ଭିତରେ ଅନେକ କିଛି ବଦଳି ଯାଇଥାଏ । ପୁରୁଷ/ମହିଳାଙ୍କ ପାଇଁ ସ୍ୱତନ୍ତ୍ର ବିଭାଗ ନଥାଏ । ଯିଏ ଯେଉଁଠି ଚାହିଁଲେ ସେଇଠି ବସିଥାନ୍ତି । ଦଳୀୟ ନେତ୍ରୀମାନେ କଲେଜ ଗାମିନୀ ତରୁଣୀଙ୍କ ଭଳି ସଜାଡ଼ି ହୋଇଥାନ୍ତି । ସେମାନଙ୍କ ଉପରେ ଡିଜିଟାଲ୍ ଭିଡ଼ିଓ କ୍ୟାମେରା ଘୁରି ଆସୁଥାଏ । ଲିଭିଂ ଟୁଗେଦେର୍‌ର ଯୁବକ ଯୁବତୀ ଯୋଡ଼ି ଆସିଥାନ୍ତି । ମୁକ୍ତ ସମାଜର ପ୍ରତିଫଳନ ସଭାରେ ଦେଖିବାକୁ ମିଳୁଥାଏ । ବରିଷ୍ଠ ନାଗରିକ ମାନେ ସେମାନଙ୍କ ପାଖରେ ଢଳି ବସିଥିବା ଯୁବତୀଙ୍କୁ ନିଃସଙ୍କୋଚରେ ଚୁମା ଦେଉଥାନ୍ତି । ବୟସ୍କାମାନେ ଜଣେ ଜଣେ ଯୁବ ସାଥୀଙ୍କୁ ଧରି ଆସିଥାନ୍ତି । କେହି ଯେମିତି ବୋର୍ ହେବେନି ସେଥିପାଇଁ ସରକାରୀକଳ ଦ୍ୱାରା ବ୍ୟାପକ ବନ୍ଦୋବସ୍ତ ହୋଇଥାଏ । ରୋମାଣ୍ଟିକ୍ ଗପ ଭିତରେ ସ୍ୱାଧୀନତାର ସଂଜ୍ଞା ପ୍ରଶସ୍ତ ହୋଇ ଯାଇଥାଏ ।

ମଞ୍ଚ ଉପରେ ଜମା ପାଣିବୋତଲ ନଥାଏ । ଫରାସୀ ବିୟର୍ ଦିପେଗ୍ ନେଇ ମୁଖ୍ୟମନ୍ତ୍ରୀ ପ୍ରଶାନ୍ତିରେ ଝୁମୁଥାନ୍ତି । ମାଇକ୍ରୋଫୋନ୍ ବି ନଥାଏ । ସବୁ କିଛି କର୍ଡ଼ଲେସ୍ । ୱାଇ ଫାଇ । ଅର୍ଥମନ୍ତ୍ରୀ ମ୍ୟୁଜିକ୍ ସହ ତାଳ ଦେଇ ବିବରଣୀ ଦେଉଥାନ୍ତି । ଗତ ବର୍ଷକ ଭିତରେ ରାଜ୍ୟର ଜନସଂଖ୍ୟା କମିଛି, ଗରିବ ହଟାଅ ଅଭିଯାନ ଶତପ୍ରତିଶତ ସଫଳ, ସବୁ ବେକାର ଯୁବକ ଯୁବତୀଙ୍କୁ ଭତ୍ତା ଦେଉଛୁ । ଆୟ ନଥିବା ଲୋକ ନାହାନ୍ତି । 'ମୁକ୍ତ ଯୌନବ୍ୟବହାର' ପ୍ରଚଳନ ଯୋଗୁଁ ଯୌନ ବ୍ୟାଭିଚାର କମିଛି । ପୂର୍ବତନ ଗରିବଙ୍କ ସଂପତ୍ତି ନିଲାମ କରି ବାଣ୍ଟିଛୁ । ଧନୀ

ଅଧିକ ଧନୀ ହୋଇଛନ୍ତି । ନକ୍ସଲ ନାହାନ୍ତି । ଚାଷୀ କାର୍ ଚଢୁଛନ୍ତି । ଅନାହାର ମୃତ୍ୟୁ ସ୍ୱପ୍ନରେ ପରିଣତ ହୋଇଛି । ଖାଦ୍ୟ ସାମଗ୍ରୀ ସଂରକ୍ଷଣ ବଡ଼ ସମସ୍ୟା ଭାବେ ଦେଖା ଦେଇଛି । ପ୍ରାଚୁର୍ଯ୍ୟ ହେତୁ ଶାନ୍ତି ଖୋଜୁଛନ୍ତି ବହୁ ଲୋକ । ଚାକିରି ଛାଡ଼ିବାକୁ ଆବେଦନ ବଢ଼ିବାକୁ ଲାଗିଛି ।

ସଂଜ ଯାଇ ରାତି ବଢୁଥାଏ । ମଝିରେ ମଝିରେ ପାନୀୟ ଯୋଗାଣ ଚାଲିଥାଏ । ମନ୍ତ୍ରୀମାନଙ୍କ ବୟାନବାଜି ତେବେ ବି ସରୁନଥାଏ । କେବଳ କୃଷିମନ୍ତ୍ରୀ ମନ ଊଣା କରୁଥାନ୍ତି । ଧନୀ ସଂଖ୍ୟା ବଢ଼ିବାରୁ ପାରଂପରିକ ଖାଦ୍ୟ ପ୍ରତି ଆଉ ସେତେ ଚାହିଦା  ନଥାଏ । ବିଦେଶରୁ ଆମଦାନୀ ହେଉଥିବା ସେଓ, କମଳା, ଅଙ୍ଗୁର ସାଧାରଣ ମେନୁରେ ସାମିଲ୍ ହୋଇଥାଏ । ଦେଶୀ ପନିପରିବାକୁ କେହି ପଚାରୁ ନାହାନ୍ତି । ଚାଷୀମାନେ ମୁଣ୍ଡରେ ହାତ ଦେବା ଅବସ୍ଥା । ତେବେ ସେମାନଙ୍କୁ ସଭାରେ କିଛି କହିବାକୁ ଅନୁମତି ଦେଇନଥାନ୍ତି ମୁଖ୍ୟମନ୍ତ୍ରୀ । ନିଜେ ମୁଖ୍ୟମନ୍ତ୍ରୀ ଗରିବ ହଟାଣରେ ରାଜ୍ୟ କେମିତି ବିଶ୍ୱ ରେକର୍ଡ଼ କରିଛି ସେଇ ଡିଣ୍ଡିମ ପିଟୁଥାନ୍ତି । ତାଙ୍କ ସ୍ୱରରେ ସ୍ୱର ମିଳାଉଥାନ୍ତି ସବୁ ମନ୍ତ୍ରୀ । ଜଣେ ଜଣେ ମନ୍ତ୍ରୀ ଭାଷଣର ଆଉଟ୍‌ସୋର୍ସିଂ କରିଥାନ୍ତି । ହାଲିଆ ହୋଇଯିବା ଭୟରେ ସେମାନଙ୍କ ବଦଳରେ ଭାଷଣ ଦେବା ପାଇଁ ଠିକାରେ ଉଚ୍ଚଶିକ୍ଷିତା ଯୁବତୀମାନଙ୍କୁ ଉଚ୍ଚ ପାରିଶ୍ରମିକ ଦେଇ ଅଣାଯାଇଥାଏ । ସେମାନେ ଭାଷଣ ଦେବାବେଳେ ସୁସୁରି ବାଜୁଥାଏ । ପୁଣି ଠିକ୍ ତାଳି ଭଳି କିଛି ଶବ୍ଦ ଶୁଭୁଥାଏ । ଏବେ ତ ରାଜ୍ୟରେ ଗରିବଙ୍କ ଛାଇ ସୁଦ୍ଧାନାହିଁ । କେଇ ବର୍ଷତଳେ ସେମାନେ ବହୁ ସଂଖ୍ୟାରେ ଥିଲେ । ସଭାସମିତି ବେଳେ ସେମାନଙ୍କୁ ଖାସ୍ ତାଳି ପାଇଁ ଖୋଜା ପଡୁଥିଲା । ବହୁ ବର୍ଷ ତଳର ଏକ ସଭାରେ ସେତେବେଳର ଗରିବମାନଙ୍କ ତାଳିର ରେକର୍ଡିଂ କରାଯାଇଥିଲା । ଏବେ ଅତ୍ୟାଧୁନିକ ଡିଜିଟାଲ୍ କୌଶଳରେ ଏହାର୍ ଷ୍ଟୁଡ଼ିଓ ରେକର୍ଡିଂ କରାଯାଇଥିବାରୁ ଠିକ୍ ତାଳି ଭଳି ଶୁଭୁଥିଲା । ସଭା ସରିଲା । ଜମା ପ୍ରାକୃତିକ ତାଳି ନଥିଲା । କାରଣ ଗରିବ ନଥିଲେ । ମନ୍ତ୍ରୀମାନଙ୍କ ବେକର ଫୁଲମାଳ ବି ମଉଳି ନଥିଲା । କାରଣ ସେଇ ଫୁଲ ଦେଶରେ ଅମଳିନ । ପଡ଼ୋଶୀ ରାଜ୍ୟରୁ ୨୦ ଲକ୍ଷ ଟଙ୍କାର  ଫୁଲ ଆସିଥାଏ । ମନ୍ତ୍ରୀମାନଙ୍କୁ ପରିବାର ପିଛା ମାତ୍ର ୫ଟି ଲେଖାଏଁ ଫୁଲ ଦିଆ ଯାଇଥାଏ । ସୁନ୍ଦରୀ ପ୍ରତିଯୋଗିତାର ବିଜୟିନୀ କଲେଜ୍ ଛାତ୍ରୀମାନଙ୍କୁ ସେମାନଙ୍କ ସୌନ୍ଦର୍ଯ୍ୟର ସ୍ତର ଅନୁଯାୟୀ ଫୁଲ ମିଳିଥାଏ । ସେମାନଙ୍କ ସୌନ୍ଦର୍ଯ୍ୟର ସ୍ତର ନିର୍ଦ୍ଧାରଣ ପାଇଁ ଗଢ଼ା ଯାଇଥିବା ସରକାରୀ କମିଟିର ଅଧ୍ୟକ୍ଷ ଥା'ନ୍ତି ନିଜେ ମୁଖ୍ୟମନ୍ତ୍ରୀ ।

ସଭା ସରିବା ଆଗରୁ ସରକାରଙ୍କ ବିଭିନ୍ନ ଯୋଜନା ଉପରେ ସୁଚିନ୍ତିତ ମତାମତ ଜଣାଇ ଏସ୍ଏମ୍ଏସ୍ କରିବାକୁ ମୁଖ୍ୟମନ୍ତ୍ରୀ ନିବେଦନ କଲେ ସଭିଙ୍କୁ । ଅଧିକାଂଶ ଶ୍ରୋତାଙ୍କ ନିବିଡ଼ ଅବସ୍ଥା ବଦଳି ନଥାଏ । ରଂଗୀନ ଆଲୋକର ପରିବେଶ ଏକ ସାମୂହିକ 'ବେଡ଼ ରୁମ'ର ଭ୍ରମ ସୃଷ୍ଟି କରୁଥାଏ । ରାଜ୍ୟର କୋଣ ଅନୁକୋଣରୁ ଆସିଥିବା ଭିଆଇପି ଯୁବକର୍ମୀଙ୍କ ସୁନିଦ୍ରାପାଇଁ ଡାକବଙ୍ଗଳାରେ ରାତ୍ରୀକାଳୀନ ବନ୍ଦୋବସ୍ତ କରିବାରେ ମନ୍ତ୍ରୀ ନେତା ବ୍ୟସ୍ତ ଦିଶୁଥାଆନ୍ତି । ଆଇଫୋନ୍ ଗୁଡ଼ିକର ମିଳିତ ସ୍ୱର ବେଶ୍ ଗହଳି କରୁଥାଏ ରାତିକୁ ।ରାଯ୍ୟର ବର୍ଷକର ମୋଟ ବଜେଟ୍ ବ୍ୟୟରେ ହତ୍ୟା କରାଯାଇଥିବା ଗରିବଙ୍କ ପ୍ରେତମାନେ ଇତିହାସର ଏକ କୋଣରେ ସ୍ଥାନଟିକେ ପାଇବାର ସ୍ୱପ୍ନ ଦେଖୁଥାନ୍ତି । ଭିଆଇପି ମାନଙ୍କ ଟାବଲେଟ୍ ପିସି ସ୍କ୍ରିନ୍‌ରେ ମୁକୁଳା ଛବି ଚାଲିଥାଏ ।



# ଚିତ୍ରଶିଳ୍ପୀ ମୀନକେତନଙ୍କ ଦୃଷ୍ଟିରେ କଳା

ମୀନକେତନ ପଟ୍ଟନାୟକ

୧. 'କଳା', ସୃଜନା ଓ ସମ୍ବେଦନତାର ଏକ ମିଶ୍ରରାଗ ଅଟେ ।

୨. ପ୍ରତ୍ୟେକଟି ସୃଜନଶୀଳ ବ୍ୟକ୍ତ ଜଣେ ଜଣେ ଦାର୍ଶନିକ ।

୩. ଶିଳ୍ପୀ ନିଜ କଳା ସାମ୍ରାଜ୍ୟର ସମ୍ରାଟ ତେଣୁ ସ୍ୱ-ସାମ୍ରାଜ୍ୟର ପରିବ୍ୟାପ୍ତ ପାଇଁ ସଦା ସୁଯୋଗ ସୃଷ୍ଟି କରିବାରେ ଲିପ୍ତ ରହିବାକୁ ଭଲପାଏ ।

୪. ଫାଙ୍କା କ୍ୟାନ୍‌ଭାସ୍ ସହ ମୁହାଁମୁହିଁ ହେଲାବେଳେ ଯେଉଁ ଦୃଶ୍ୟଗତ କାବ୍ୟ ରଚନା ହୁଏ, ତାହା ହିଁ କଳା ।

୫. ପ୍ରୟୋଗଶାଳାର ଆଶାର ଆଲୋକ ବା ବକୁଳ ବନର ବଇଁଶୀର ସ୍ୱର, ତାହା ହିଁ କଳା ହୋଇପାରେ ଯାହା ଆକର୍ଷଣୀୟ ଅଟେ ।

୬. ଭଲ ଚିତ୍ରକର ଟିଏ ହେବା ପାଇଁ ଢ଼େର୍ ନାଁ କମେଇଥିବା, ବହୁ ସମ୍ମାନର ଅଧିକାରୀ ହେବା, କଳାର ବ୍ୟବସାୟୀକରଣରେ ଧୁମ୍ ମାତିବା, ଆଦି ଅପେକ୍ଷା ଛବିକୁ ଭଲ ପାଇବା ବେଶି ଗୁରୁତ୍ୱପୂର୍ଣ୍ଣ ଅଟେ ।

୭. ଶିଳ୍ପୀ ଠିକ୍ ଗୋଟିଏ ଗର୍ଭବତୀ ନାରୀ ସଦୃଶ । ନିଜର ମନର ଭାବନାକୁ ଚିତ୍ରପଟରେ ଚିତ୍ରାୟିତ କରିବା ପର୍ଯ୍ୟନ୍ତ ସେ ଗର୍ଭ ବେଦନା ଭୋଗ କରୁଥାଏ । ଛବିଟି ସଂପୂର୍ଣ୍ଣତ୍ୱ ପ୍ରାପ୍ତି ହେଲେ ସନ୍ତାନପ୍ରାପ୍ତିର ସୁଖଦ ଅନୁଭୂତି ଭଳି ଲାଗେ ।

୮. ଚିତ୍ରକର ଦିବ୍ୟଦ୍ରଷ୍ଟା ଅଟେ । କଳା ସାଧନାରେ ରତ ଥିବା ବେଳେ ତା'ର ତୃତୀୟ ନେତ୍ର ଯଥେଷ୍ଟ କ୍ରିୟାଶୀଳ ହୋଇଯାଇଥାଏ ତେଣୁ ତା'ର କଳାକୃତିରେ ଆଗାମୀ ସମୟରେ ସମାଜ ପାଇଁ କିଛି ବାର୍ତ୍ତାର ଆଭାସ ଦୃଷ୍ଟିଗୋଚର ହୁଏ ।



ବିଶେଷ ସୂଚନା : -

ଏହି ଚିତ୍ରକୁ ଦେଖି କାହାଣୀ କିମ୍ବା କବିତାଟିଏ ଲେଖି ପଠାନ୍ତୁ । ତାହା ଆହ୍ୱାନର ଆଗାମୀ ସଂସ୍କରଣରେ ପ୍ରକାଶିତ ହେବ । ଏବଂ ଶ୍ରେଷ୍ଠ ବିବେଚିତ କବିତା ଏବଂ କାହାଣୀକୁ ପୁରସ୍କୃତ କରାଯିବ ।



ମସୀଜୀବିର ଡାଏରୀ

# ସ୍ୱାଧୀନ

ଲମ୍ବୋଦର ପ୍ରସାଦ ଦାଶ

ସେଇ ଜଙ୍ଗଲ ପାହାଡ଼ ତଳି ଗାଁ ଟି । ସେଠାରେ ଯାହା କେବେ ଘଟିନଥିଲା, ଏବେ ଘଟିଲା । ଗୋଟିଏ ନୁହେଁ, ଅନେକ କଥା । ଜଣେ 'ବାବୁ' ଆସିଲେ । ଗାଁ ରେ ଗାଡ଼ି ଚକା ମାଡ଼ିଲା । ସାଥିରେ ୪/୫ ଜଣ ପ୍ୟାଣ୍ଟସାର୍ଟ୍, ବିଲାତି ପୋଷାକ ପିନ୍ଧା ଲୋକ ବି ଆସିଲେ । ଜଙ୍ଗଲୀ ଫୁଲ, ଓଦା ମାଟିର ମହକ ଭିତରେ ବଢ଼ିଥିବା ମଳିମୁଣ୍ଡିଆ ଲୋକଙ୍କ ନାକରେ ସହରୀ ଅତରର ନକଲି ବାସ୍ନା ଲାଗିଲା । ଦିନ ଶେଷରେ ଯାହା ଶୁଣାଗଲା, ତା'ବି ପ୍ରଥମ ଥିଲା । ଗାଁ କୁ ରାସ୍ତା ପଡ଼ିବ, ଚଉଡ଼ା ରାସ୍ତା । ଆଗରୁ ଗାଁ ଲୋକକୁ କିଏ କାମ ଦେଉନଥିଲା, ସବୁ ମନକୁ ମନ କରୁଥିଲେ । ଏବେ କେହି ଜଣେ 'ସରକାର' ବୋଲି 'ବାବୁ'ଟା କାମ ଦେବ । ଆହୁରି ଏଇଆଯେ, ସେ ବାବୁଟା କୁଆଡ଼େ ସମସ୍ତଙ୍କର ବାବୁ ! ତେବେ ଏତେ ଦିନପରେ ସେଇ 'ସରକାର' ବାବୁଟାର ଅଜଣା ଗାଁ ପାଇଁ ଏ ଦରଦ କାହିଁକି ଜଣା ପଡୁନଥିଲା । ଏହା ଭିତରେ ୧୦ ବରଷ ବିତିଗଲା । ରାସ୍ତାଟି ତିଆରି ହେଲା । ଗାଁର ସୁକୁ, ମନୁଆ, ହରି ସବୁ ଧୋତିକଛା ଛାଡ଼ି ପ୍ୟାଣ୍ଟ୍ ପିନ୍ଧିଲେଣି । ଗୁରୁବାରିର ପିଲାଟା ଏବେ ତା'ବାପା ସହ ବିଲକୁ ଗଲାଣି । ଧନୁଆର ଆଖି ପେଜୁଆ ପେଜୁଆ ହୋଇଗଲାଣି । ମୁଣ୍ଡୁ ବାହା ହୋଇ ପିଲାର ବାପା ହେଲାଣି । ହେଲେ ଗାଁକୁ ଗାଡ଼ିମୋଟର ଆସିଲା ନାହିଁ ।

ହଠାତ୍ ଦିନେ ଜଣେ ଧଳାକୁର୍ତ୍ତା ପିନ୍ଧା ଲୋକଟା ସହ ୩/୪ଟି ଧଳା ଗାଡ଼ିରେ ଗୁଡ଼ାଏ ଲୋକ ଆସିଲେ । ସବୁ 'ଜୟ ଜୟ' କରୁଥିଲେ । ସୁକୁ, ମନୁଆ, ହରି ସବୁ ସେମାନଙ୍କ ସ୍ୱରରେ ସୁର ମିଳାଉଥିଲେ । ଧଳାକୁର୍ତ୍ତା ଲୋକଟା କହିଲା, କାଲିଠୁ ଗାଡ଼ି ଗାଁ କୁ ଆସିବ । ଗାଁ ଲୋକ ସବୁ ଅନାଉଥିଲା, ସେମାନେ ସବୁ ମନକୁ ମନ ତାଳି ମାରିଲେ । ଏହା ଭିତରେ ଆଉ ୨ ବର୍ଷ କଟିଗଲା । ଧନୁଆ ମରିଗଲା, ସୁକୁ ଫଟଫଟିଆ ଚଢ଼ିଲା । ଗୁରୁବାରି ପୁଅଟା ବାପାର ବିଲ ବିକି ସହରକୁ ଚାଲିଗଲା । ତଥାପି ଜଣା ପଡୁନଥିଲା ଗାଁ କୁ ରାସ୍ତା କାହିଁକି ହେଲା ?

ପୁଣି ଦିନେ ଗାଁ ଦାଣ୍ଡରେ ବୈଠକ ବସିଲା । ସେହି 'ସରକାର' ବାବୁଟାର ପାଖ ଲୋକ ଆସିଲେ । କହିଲେ, 'ପାହାଡ଼ ଟାରେ ସୁନା ଭଳିଆ ଧାତୁ ଭର୍ତ୍ତି ଅଛି । ପାହାଡ଼ଟାକୁ ଖୋଳିବେ । ଗାଁକୁ ହଟେଇବେ । ଗାଁ ଦେବୀ ପାଖ ପୋଖରୀଟାକୁ ପୋତି ଦେବେ । ହେଲେ ଏହା ବଦଳରେ ନୂଆ ପକ୍କା ଘର ମିଳିବ । ଚାକିରୀ ମିଳିବ । ଗାଁରେ ସେଦିନ ରାତିରେ କେହି ଶୋଇନଥିଲେ । ଚାରିଆଡ଼େ ଝିଣ୍ଟିକା ଝିଁ ଝିଁ କରୁଥିଲା । ଗାଁ ଦେବୀ ପୋଖରୀ ପାଖରେ ବୁଢ଼ା ବେଙ୍ଗଟା କେଁ କଟର

କରୁଥିଲା । ବର୍ଷା ନ ଥାଇ ବି ପବନ ଓଦାଳିଆ ଲାଗୁଥିଲା । ଶୁକ୍ରୁ ଗାଁ ଦାଣ୍ଡରେ ଖଟିଆ ଉପରେ ବସି ଆକାଶକୁ ଅନାଉଥିଲା । ଧନୁଆ ପଚାରିଲା,

-ବା' ! ଏବେ କ'ଣ କରିବ ଯେ । 'ସରକାର' ବୋଲି ଯେଉଁ ଲୋକଟା, ତା'ର ବଳ ବେଶି, ତାକୁ ପାରିବାନି । ତା'ର ଗଣ୍ଡା ଗଣ୍ଡା ଲୋକ । ଶୁଣିଛି ମଣିଷ ହେଲେ ବି ସେମାନେ ମଣିଷଗୁଡ଼ାକୁ ପୋକମାଛି ପରି ଦଳିଦିଅନ୍ତି । ଆମେ ତ ମୁଠାଏ ?

ଶୁକ୍ରୁର ବୁଢ଼ା ଦଦରା ଦେହଟା ଥରୁଥିଲା, ହଠାତ୍ ଅଟକିଗଲା । ଶୁକ୍ରୁ କହିଲା,

-ଆରେ ଭେଣ୍ଡିଆ ! ମଣିଷ ଜିଇଁବାକୁ ଶ୍ୱାସପ୍ରଶ୍ୱାସ ଲୋଡ଼ା । ଲଢ଼ିବାକୁ ବିଶ୍ୱାସ ହେଲେ ହେଲା । 'କି ବାବା ! ଛାଡ଼ି ପଳେଇଲେ ହେବନି ?' ଧନୁଆ କହିଲା, ଶୁକ୍ରୁର ଆଖି ଟା ଜୁଳୁଜୁଳିଆ ପୋକ ଭଳି ଜଳୁଥିଲା, କହିଲା, – 'ରାସ୍ତା ହେବା ଆଗରୁ ଆମର କେହି ବାବୁ ନଥିଲା । ଏବେ ଗଣ୍ଡା ଗଣ୍ଡା ବାବୁ । ଏ ପାହାଡ଼ଟା କାଟିଲେ, ଆଉରି ଗଣ୍ଡାଏ ବାବୁ ଆସିବେ ।... ଧନୁଆ, ଆମକୁ ବାବୁ ଲୋଡ଼ା ନାଇଁରେ । ଟଙ୍କା ବି ଲୋଡ଼ା ନାହିଁ । ଆମକୁ ଜିଇଁବାକୁ ଲୋଡ଼ା । ଯେଉଁଠି ଆମର ପାଣିପବନ, ମାଟି ସବୁଥିବ । ଏତିକିବେଳେ ଶାନ୍ତିର ପିଲାଟି କାନ୍ଦି ଉଠିଲା...କୁଆଁ....କୁଆଁ... । ଘରର ମିଟି ମିଟି କରୁଥିବା ଡିବିରିଟି ଜଳିଉଠିଲା ।



# ଆମ ଗାଁ ହାଲଚାଲ୍

ଡ଼ା ଜ୍ୟୋତି ପ୍ରସାଦ ପଟ୍ଟନାୟକ

ବୁଦ୍ଧିଆ ଗାଁ ଦାଣ୍ଡରେ ଢ଼ଳି ଢ଼ଳି ଗୀତ ଗାଇ ଗାଇ ଆସୁଥିଲା, ବାଟରେ ହିଁ ହରି ତା'କୁ ଅଟକାଇ ଦେଇ କହିଲା, "ହଇରେ, ତୁ ମଦ ପି'ଚୁ ?" ବୁଦ୍ଧିଆ ଦୁଷ୍ଟ ହସଟିଏ ଦେଇ କହିଲା, "ଯା ବେ । କା ବୋପାର ପଇସାରେ ପି'ଚି କି ? ଖୋଦ୍ ଖଟିଲି ପିଇଲି ।" ହରି କହିଲା, "ମାଷ୍ଟ୍ରେ କ'ଣ କହିଥିଲେ ଭୁଲିଗଲୁ ?"

ମାଷ୍ଟ୍ରଙ୍କ କଥା ଶୁଣି ଟିକେ ମାନ୍ଦା ପଡ଼ିଯାଇ ବୁଦ୍ଧିଆ କହିଲା, "କୋଉ ସବୁଦିନ ପିଉଚି କି ? ଆଜି ଟିକେ ପକେଇ ଦେଇଚି ଯେ ଏତେ ଭାଷଣ କାହିଁକି ଦେଉଚୁ ? ମାଷ୍ଟ୍ର ଶଳା ପିଇବନି ବୋଲି କ'ଣ ପୁରା ଗାଁ ପିଇବନି ?"

ହରି ଶଙ୍କିଯାଇ କହିଲା, "ତୁ କ'ଣ କହୁଛୁ ତୁ ଜାଣିନୁ । ବୁଝିଲୁ ଦି ଗିଲାସ ପକେଇଦେଇ ବାପ ବ୍ରହ୍ମାଣ୍ଡ ଛୋଟ ବୋଲି ଦେଖୁଚୁ, ଦେଖିବୁ ମାଷ୍ଟ୍ରଙ୍କୁ କହିବି !!!"

ବୁଦ୍ଧିଆ ହସିଦେଇ କହିଲା, "ଯାଃ ବେ, ମାଷ୍ଟ୍ର କ'ଣ ମୋ ଘର ପୋଷିବ କି ରେ ? ତା' କଥା ମୁଁ କାହିଁକି ଶୁଣିବି ? " ଆଉ କିଛି କହିଥାନ୍ତା କି କ'ଣ ? ପଛରୁ ଆସି ବଂଶୀ ତା ମୁଣ୍ଡକୁ ଢ଼ୋ କରି ଚାପୁଡ଼ାଟେ ଦେଲା । ହ ହ କହୁ କହୁ ବୁଦ୍ଧିଆ ଗାଁ ଦାଣ୍ଡରେ ଚିତ୍‌ପଟାଙ୍ଗ୍ ହୋଇ ପଡ଼ିଗଲା । କଥା କ'ଣ ବୁଝିବା ପୂର୍ବରୁ ଶଗଡ଼ରେ ବନ୍ଧାଥିବା ଜୁଆଳି ବାଡ଼ିଟା ଉଠେଇ ଦେଲା ଗୋଟେ ପାହାର ଯେ ବୁଦ୍ଧିଆ ବେହୋସ୍ ହେଇଗଲା । ହରିଆ କ'ଣ କରିବ ବୁଝିବା ପୂର୍ବରୁ ସେ ପଳାଇଗଲା । ବୁଦ୍ଧିଆକୁ କାନ୍ଧରେ ଭରାଦେଇ ହରି ତା'ଘର ଆଡ଼କୁ ଚାଲିଲା । ଏହି ସମୟରେ ବାଟରେ ଚାଲି ଆସୁଥିବା କାର୍ଜିଙ୍କ ନଜର ବୁଦ୍ଧିଆ ଉପରେ ପଡ଼ିଗଲା । "କି'ରେ କଣ ହେଲା ? ବୁଦ୍ଧିଆକୁ ? ତାକୁ ଏମିତି ଟେକିଧରି ଚାଲିଛୁ କାହିଁକି ?" ହରିଆ କହିଲା, ବାଟରେ ମୁହଁ ବୁଲେଇ ହେଇ ଚକ୍କର ଖାଇ ପଡ଼ିଗଲା ଯେ ତାକୁ ଧରି ଘରକୁ ଯାଉଛି ।

ବୁଦ୍ଧିଆ ଘର ସାମନା ପିଣ୍ଡାରେ ତା'କୁ ଶୁଆଇ ଦେଇ ହରିଆ ଡ଼ାକ ପକାଇଲା, "ଖୁଡ଼ୀ, ଏ ଖୁଡ଼ୀ, ଧାଇଁ ଆ' ବୁଦ୍ଧିଆର ହୋସ୍ ନାଇଁ ।"

ବୁଦ୍ଧିଆ ସ୍ତ୍ରୀରି ଲଳିତା ଧାଇଁ ଆଇଲା ପରେ ସବୁ କଥା ହରି କହିଲା । ବୁଦ୍ଧିଆ ମାଇପ ଚୁପ୍ ଚାପ୍ ଘର ଭିତରକୁ ଗେରସ୍ତକୁ ଟେକି ନେଇଗଲା । ହରିଆ ହାତରେ ଗାଁ କଂପାଣ୍ଡର ପାଖକୁ ଖବର୍ ଦେଲା ଆସି ଦେଖିଯିବାପାଇଁ । ସଂଜ ବେଳକୁ ବୁଦ୍ଧିଆ ସେଇମିତି ବିଛଣା ଉପରେ ପଡ଼ିଥିଲା, ହରିଆ ଆସିକହିଲା, "ନିଶା ଛାଡ଼ିଲାଣି ନା ନାହିଁ ।" ବୁଦ୍ଧିଆ ସ୍ତ୍ରୀରି ଲଳିତା କହିଲା,

‘‘ବାପ ତମେ ଆଉ ସେ କଥା ତୁଣ୍ଡରେ ଧରନି । ମାଷ୍ଟ୍ରେ ଶୁଣିଲେ ଗାଁରୁ ବାହାର କରିଦେବେ ।’’ ହରିଆ କହିଲା, ‘‘ଆଉ କଂପାଣ୍ଡର ଆଜ୍ଞା ! ତାଙ୍କୁ କିଏ ମନା କରିବ, ସିଏ ତ ନିଶ୍ଚେ ମାଷ୍ଟ୍ରଙ୍କୁ କହିଦେବେ ?’’ ବୁଦ୍ଧିଆ ଖଟରେ ବସି କହିଲା, ‘‘ଦି କୋଡ଼ି ଦେଲି, ଆଉ ମୁଗ ଦି ଅଡ଼ା ଦେବି ବୋଲି କହିଲି, ସେ କାହାକୁ କିଛି କହିବେନି ବୋଲି କହିଚନ୍ତି ।’’

ଦୁଇଦିନ ବିତିଗଲାଣି, ବୁଦ୍ଧିଆର କ୍ଷତ ଶୁଖିଗଲାଣି । ତୁଠକୁ ଯିବାକୁ ବାହାରୁଥିଲା, ଦୁଆର ପାଖରେ ଆସି ବଂଶୀ ରଡ଼ିଟେ ଦେଲାରୁ ଚୁପ୍ ଚାପ୍ ବସିପଡ଼ିଲା । ବଂଇଶୀ କହୁଥିଲା, ‘‘ଭଲ ଦଶା ଅଛି ବୋଇଲେ ମୋ ପଇସା ଦେଇ ଦେ ନହିଲେ, ଦେଖିବୁ । ବାଟରେ ଚଲେଇ ଦେବିନି ତତେ । ଗୋଡ଼ଟାକୁ ଟାଙ୍ଗିଦେବି ଯେ ଘରେ ଘୋଷାରି ହଉଥିବୁ ।’’ ବୁଦ୍ଧିଆ ସ୍ତ୍ରୀରି ଦୁଆର ସେପାଖେ ଥାଇ କହିଲା, ‘‘ଏ ବାପ ଏ ତତେ ଜୁହାର ହୋଉଛିରେ ବାପ, ତୁ ଯା’ କାଲି ଆଡୁକୁ ମୁଁ ତତେ ତୋ ପଇସା ନେଇ ଦେଇଦେବିରେ ବାପ । ତୁ ଏକ୍ଷଣେ ଯା’ । ମାଷ୍ଟ୍ରେ ଶୁଣିଲେ ଗାଁରୁ ବାହାର୍ କରିଦେବେରେ ବାପ । ତୁ ଯା’ ।’’

ବଂଶୀ ଚାଲିଗଲା । ଘର ଭିତରକୁ ଲେଉଟି ପଡ଼ି ଲଳିତା ବୁଦ୍ଧିଆ ଉପରେ ଭୀଷଣ ରାଗରେ ପାଟିକରୁଥିବା ଶୁଣାଯାଉଥିଲା, ‘‘ଯାଉନ ପୋଖରି ତୁଠରେ ଗୁହ ଗୋବର ଖାଇବ । କେତେ ମନାକଲେ ସୁଧାରୁ ମୋ କଥା ଶୁଣୁନ । ତମେ ଥିଲେ କେତେ ନଥିଲେ କେତେ ? ମରି ହଜି ଯ’ ଶାନ୍ତିରେ ରହିବି । ଏ ନିତି ଦିନ କାହାର ହେଲେ ଗୋଡ଼ ଧରିବାକୁ ପଡ଼ିବନି । ବାହା ହେବା ଦିନରୁ ଶାନ୍ତି ନାହିଁ । ପିଇ ପିଇ ତ ବଂଶ ବୁଡ଼େଇଲଣି । ଘର ଡ଼ିହ ଖଣ୍ଡେ ହେଲେ ଅଛି ସେତକ ବିକି ଦିଅ । ତମର କ’ଣ ଯାଉଚି, ମରି ହଜି ଗଲେ ମୁଁ ବାରଦୁଆର ଶୁଣ୍ଠିପିଣ୍ଡା ହଉଥିବି ନା । କୁଳାଙ୍ଗାର ପୁଅଟେ ଜନ୍ମ ଦେଇଚ ଯେ ଯାଇ ସୁରାଟରେ ଘର କରିପକେଇଲା । ବୋପା ବୋଉ ବଞ୍ଚିଲେ କି ମଲେ କିଛି ବୁଝିବାକୁ ନାହିଁ, ଏଇଠି ଏ ରଇଜଳା ମରଦଟା ମଦରେ ବୁଡ଼ି ରହୁଛି ଯେ ଘରଦ୍ୱାର କଂସାବାସନ ସବୁ ବନ୍ଧା ପକେଇ ଦେଲାଣି । ମୁଁ ଏବେ କ’ଣ କରିବି ଲୋ ବୋଉ । କେଡ଼େ ଆଶା କରି ବାହା ଦେଇଥିଲୁ ଲୋ ବୋଉ । ଘଇତା ମୋ’ର ମଦୁଆ ହେଇକି ପିଠିରେ ମୋ’ର ଖାଲ ଖୋଳି ଦେଲାଲୋ ବୋଉ । ପୁଅ ବୋଲି ଯିଏ ଜନମ କରିଲି, ମୁହଁ ନ ଦେଖି ସେ ସୁରାଟ ଗଲାଲୋ ବୋଉ ।’’ ଲଳିତା ବାହୁନି ବାହୁନି କାନ୍ଦୁଥିଲା । କାନ୍ଥି ସେପାଖରେ ଛିଡ଼ାହେଇ, କୁନାବୋଉ ସବୁ ଦେଖୁଥିଲା, କୁମାରୀ ନାନୀକୁ କହୁଥିଲା, ‘‘ନି’ତି ଦିନ ଘରେ କଳିକଜିଆ ଲାଗିଚି । କେତେ ଆଉ ସହିବ ହେଲେ ନଳିତା ? ବାହା ହେଇ ଆସିଲା ବେଳୁକୁ ଆମ ଗାଁ ରେ ସବୁଠୁ ତୋଫା ଗୋରା ବୋହୂ ବୋଲି ସବୁ କହୁଥିଲେ, ଏବେ ପୁଅ ସୁରାଟ ପଳେଇଲା ଆଉ ଘଇତା ! ତା’କୁ ମଦ ଖାଇଲାଣି । କୋଉଦିନ ସେ ବି ଚାଲିଯିବ, ବିଚାରିଟା କରିବ କ’ଣ ଆଉ ।’’

ଆହା ଚୁ ଚୁ ହେଇ ସେମାନେ ତୁଠକୁ ଯିବାକୁ ବାହାରି ପଡ଼ିଲେ ।

ଆଜି ରବିବାର, କୋଠଘରେ ତ୍ରିନାଥମେଳା ପାଇଁ ଯୋଗାଡ଼ ଚାଲିଛି । ବଳିଆ, ରମେଶ, କୁରେଶ ମୃଦଙ୍ଗ ଧରି ତାଳ ଦେଉଛନ୍ତି, ଗାଁ ଦାଣ୍ଡରେ ବିଚିତ୍ର ସଂଗୀତର ଲହରୀ ଖେଳୁଛି, ଗିନି ଆଉ ଝାଞ୍ଜ ସାଙ୍ଗରେ ରଘୁ ପ୍ରଧାନର ଭଜନା ଶୁଭୁଛି । ବୁଦ୍ଧିଆ ଦୁଆର ପାଖ ପିଣ୍ଡାରେ କମ୍ବଳଟେ ଘୋଡ଼େଇ ହେଇ ବସିଛି । ଦୁଆରବନ୍ଧ ସେ ପାଖକୁ ଲଳିତା ମୁହଁରେ ଓଢ଼ଣା ଦେଇ କାନିଟାକୁ ଦାନ୍ତରେ ଧରି ବସିଛି । କାହ୍ନୁ ପୁରୋହିତ ପୂଜା ଆରମ୍ଭ କରି ମେଳା ବହି ପଢ଼ିଲେଣି । ପିଲାମାନେ ଏଣେ ତେଣେ ବୁଲୁଛନ୍ତି । ଦୁଆରେ ବସି ବସି ବୁଦ୍ଧିଆ କହୁଥିଲା, “ମୋ ପେଟଟା କିସ ମାରୁଚି ?”

ଲଳିତା ରାଗ ଗରଗର ହେଇ କହୁଥିଲା, “ଯାହା ତ ନିଆଁ ପାଣି ଗିଳୁଚ, ପେଟ କାଟିବନି ତ ଆଉ କ’ଣ ହେବ ?” ଗିଲାସେ ପାଣି ଆଣି ବଢ଼େଇ ଦେଇ ଦୁଆରବନ୍ଧ ସେପାଖରେ ବସିଥିଲା ଲଳିତା । ବୁଦ୍ଧିଆ ପାଣି ଗିଲାସଟା ହାତରେ ଧରିଲା, ହେଲେ ମୁହଁ ପାଖକୁ ନେଲାବେଳକୁ ହାତରୁ ପଡ଼ିଗଲା । ଆଉ ତା ସହିତ ସେ ବି ପିଣ୍ଡା ତଳକୁ ପଡ଼ିଗଲା । “ଏ ବୋଉଲୋ ମୋ ରାଜୁ ବାପାକୁ କିସ ହେଇଗଲା ଲୋ ।” ବୋଲି ଲଳିତା ଯେମିତି ଚିତ୍କାରଟାଏ ଛାଡ଼ିଛି ସବୁ ଧାଇଁ ଆସିଲେ । ଟେକା ଟେକି କରି କଂପାଣ୍ଡର ପାଖକୁ ନେଇଗଲେ । ଦି’ଟା ସାଲେନ୍ ଆଉ ଦି ଯୋଡ଼ା ଇଞ୍ଜେସନ୍ ଲାଗିଲା ପରେ ତା ହୋସ୍ ଆସିଲା । କଂପାଣ୍ଡର କହିଲା, ଆଉ କିଛି ହେଲେ ତା’କୁ ସହରକୁ ନେବାକୁ ପଡ଼ିବ ।

ରାତି ସାରା ଲଳିତାକୁ ଆଉ ନିଦ ହେଇନି । ବୁଦ୍ଧିଆ ଘୁଙ୍ଗୁଡ଼ି ମାରୁଛି, ଚମକୁଚି ଆଉ ବିଳିବିଳେଉଚି । ସକାଳ ହେଲା, ବୁଦ୍ଧିଆ ବର୍ତ୍ତମାନ ଠିକ୍ ଥିଲାପରି ଲାଗୁଥିଲା । ଖାଲି ଟିକେ ମୁଣ୍ଡଟା ବୁଲେଇ ଦେଉଥିଲା, ହେଲେ କଂପାଣ୍ଡର କହିଥିଲା ସାଲେନ୍ ଲାଗିଚି ମୁଣ୍ଡ ବିନ୍ଧିବ ଆଉ ବୁଲେଇବ । ଦିପହର ବେଳକୁ ପଖାଳ ଖାଇଦେଇ ପିଣ୍ଡାଟାରେ ଶୋଇଗଲା ବୁଦ୍ଧିଆ । ରାସ୍ତାରେ ଯାଉଥିଲା ହରିଆ, ବୁଦ୍ଧିଆ ପାଖାକୁ ଆସି ତା’ ଦେହପା କଥା ବୁଝିଲା । ବୁଦ୍ଧିଆ ଭାରୀ ଦୁର୍ବଳ ହେଇଯାଇଥିଲା । କହିଲା ଆଉ ମୁଁ ବଞ୍ଚିବିନି ରେ । ମୋ ପୁଅଟାକୁ ଟିକେ ଦେଖିବାକୁ ମନ ହେଲାଣି । ହରିଆ କହିଲା, ମୁଁ କାର୍ଜି ଆଜ୍ଞାକୁ କହିଦେବି ସେ ତାର(ଟେଲିଗ୍ରାମ)ଟେ ବାଟେଇ ଦେବେ । ପୋଖରୀ ପାଖରେ ବୁଦ୍ଧିଆ କଥା ପଡ଼ିଥିଲା । ଦାନ୍ତୁରା କହିଲା, “ବୁଦ୍ଧିଆଟା ମରିବନି ତ ଆଉ କଣ ହେବ ? ତା ଭାରିଜା ନି’ତି ତାକୁ ଯେତେ ବୁଝେଇଲେ ସୁଧାରୁ ଶୁଣୁନି । ମଦ ଦୋକାନରେ ଘର କରି ନିଇତି ଦିନ ଘରେ କଳିଗୋଳ ଲଗେଇଚି । ଏକା ସେଇ ମଦ ନିଶା ପାଇଁ ପୁଅ ତା’ର ଘର ଛାଡିଲା ଯେ ଫେରିବା ନାଁ ନଉନି । ଗଲା ହପ୍ତାରେ ହଣ୍ଡାଟେ ଧରି ଆସିଥିଲା ମୋ ପାଖକୁ କହିଲା, ଏଇଟା ରଖିକି ଟଙ୍କା ଚାରିକୋଡ଼ି ଦେ । ଧାନସିଝା ହଣ୍ଡାଟା । ପଚାରିଲି

ଘରେ କହିଚୁ, ସେ ଗର ଗର ହୋଇ ଚାଲିଗଲା । ସବୁ ତ ସେଇ ଗନ୍ଧିଆ ପାତ୍ର ପାଖରେ ବନ୍ଧା ପକେଇଚି । ଗେରସ୍ତ ଭାରିଜା ସବୁ ଦିନ ଝଗଡ଼ାଝାଟି କରୁଛନ୍ତି । କ'ଣ ଆଉ ହେବ? ''

କାହ୍ନୁ କହିଲା, ''ଏଇ ଚାରିଦିନ ତଳେ ବଂଇଶୀ ପରା ତା'କୁ ବିଚ୍ ରାସ୍ତାରେ ପିଟିଥିଲା । କଥାଟା କ'ଣ ବୁଝିଲା ବେଳକୁ ଜଣାପଡିଲା ଯେ ସେ କୁଆଡ଼େ ଉଧାର ନେଇଚି, ଦେବାର ନାଁ ଧରୁନି ।''

ଏଇମିତି କଥାବାର୍ତ୍ତା ଚାଲୁଥିବା ସମୟରେ କାର୍ଜି କରଣ ସେହି ବାଟ ଦେଇ ତୁଠକୁ ଯାଉଥିଲେ, ଅଟକି ଗଲେ, କଥା କ'ଣ ବୋଲି ପଚାରିଲେ । ସବୁ ଶୁଣି କରଣ ଆଜ୍ଞା କହିଲେ, ''ମୂର୍ଖ ଗୁଡ଼ାକ କୋଉଠିକାର ! ଯେତେ ବୁଝେଇଲେ ସୁଧା ମୁଣ୍ଡରେ ପଶିବନି । ଗାଁରେ ମଦ ପଶିବନି ବୋଲି ନିୟମଟେ କରିଥିଲି ଯେ ଶୁଣିଲି, କିଏ କିଏ କହୁଛନ୍ତି, କରଣ ନ ପିଇଲେ ଆମେ ପିଇବୁନି କି ? ଯାଅ ପିଅ । ହେଇ ଯେମିତି ବୁଦ୍ଧିଆ ଏବେ ଛଟପଟ ହେଇ ମରୁଚି ସେମିତି ମରିବ ସବୁ ।''

ପନ୍ଦର ଦିନ ବିତିଗଲାଣି । ବୁଦ୍ଧିଆ ଆଉ ଘରୁ ବାହାରି ପାରୁନି । ଭାରିଯା ସବୁବେଳେ ଚାହିଁ ରହିଛି । ଜାଣିଛି ଗେରସ୍ତ ଗୁଣ । ଘରୁ ବାହାରିଲେ ମଦ ପିଇବ । ହେଲେ ବୁଦ୍ଧିଆ ଆଖି ଅନ୍ଧାର ଦିଶୁଛି । ଦେହହାତ ଅବଶ ହେଇଗଲା ପରି ଲାଗିଲାଣି । ପେଟଟା ଫୁଲିଯାଇଛି, ତେଲ ମାଖିଲା ପରି ଚିକିଚିକ୍ କରୁଚି, ଲୋକେ କହୁଛନ୍ତି କାଳେ ଜଳୋଦରୀ ହେଲାଣି । ମାଧିଆ ପ୍ରଧାନକୁ ହେଇଥିଲା ଯେ ଡାକ୍ତରଖାନା ରେ ତା ପେଟରୁ ପାଣି ବାହାର୍ କଲେ ସୁଦ୍ଧା ବଞ୍ଚିଲାନି । ଲଳିତା ଛଟପଟ ହଉଚି । କ'ଣ କରିବା ବାଟ ଦିଶୁନି । ଆଜିକାଲି ବୁଦ୍ଧିଆ ଖାଇଲେ ପିଇଲେ ବି ଅଣନିଃଶ୍ୱାସୀ ହେଇ ଯାଉଚି । କବିରାଜ ଆଜ୍ଞାକୁ କହିବା ପରେ ସେ କହିଲେ ତା'କୁ ନେଇ ବଡ଼ ମେଡ଼ିକାଲ୍ ଯାଅ । କେମିତି ଯିବ ସେ । ଅପାଠୋଇଟେ, ବାଟ ଚାଲିବା ଜାଣେନି । ଅଗତ୍ୟା ହରିଆକୁ ଡ଼ାକ ପକାଇ ନେହୁରା ହେଲା, ହରିଆ ଯିବାପାଇଁ ଅମଙ୍ଗ ହେଉଥିଲା, ହେଲେ ଶେଷରେ ରାଜି ହୋଇଗଲା ।

ବଡ଼ ମେଡ଼ିକାଲରେ ଦଶ ଦିନ ହେଲାଣି ପଡ଼ିଚି ବୁଦ୍ଧିଆ । ପେଟରେ ଛୁଞ୍ଚି ଫୋଡ଼ିଦେଇ ଡାକ୍ତର ନିତି ପାଣି ବାହାର୍ କରୁଛନ୍ତି, ହେଲେ ଆଉଥରେ ପାଣି ଜମା ହେଇ ଯାଉଚି । ବଡ଼ ଡ଼ାକ୍ତର ଜଣେ କହିଲେ, ସେ କାଳେ ଆଉ ବଞ୍ଚିବନି । ତାଙ୍କ ଗୋଡ଼ ଧରି କାନ୍ଦିଲା ଲଳିତା । କହିଲା ଆଜ୍ଞା ମୋ ସଂସାର ଭାସିଯିବ । ଡ଼ାକ୍ତର କହିଲେ ସେ ଯେତେବେଳେ ମଦ ପିଉଥିଲା ମନା କଲୁନି, ଏବେ କାନ୍ଦିଲେ କଣ ହେବ ? ତିରିଲା ଲୋକ ଆଜ୍ଞା ମରଦଟା ଆଗରେ କେମିତି ଉଚ୍ଚ ସ୍ୱରରେ କହିଥାନ୍ତି କଥାଟେ ? ଏବେ ଭୋଗୁଛି ବୋଲି ପଦେ ଅଧେ କହିଦେଉଚି, ନଇଲେ ଗାଁ ରେ ମରଦ ଆଗରେ ପାଟି ଖୋଲିଲେ, ଲୋକେ କ'ଣ କହିବେ ?

ବଡ଼ ମେଡ଼ିକାଲରେ ରହିବାର ପନ୍ଦର ଦିନ ହେଇଗଲାଣି । ରାଜୁ (ବୁଦ୍ଧିଆର ପୁଅ) ଆସିଚି, ସୁରାଟରୁ । ମେଡ଼ିକାଲ୍ ଭିତରେ ବୋପା ଉପରେ ବହେ ବର୍ଷିଗଲା । ରାଗ ଗର ଗର ହେଇ କହିଲା, ତୁ ମରି ଯା' ବୋଉ କୁ ନେଇ ମୁଁ ସୁରାଟ୍ ପଳେଇବି । ପୁଅକୁ ଦେଖି ତା'ଦେହ ଭଲ ହେଇଗଲା ପରା, ଚାରିଟା ଦିନରେ ସୁସ୍ଥ ହେବାକୁ ଲାଗିଲା । ଡ଼ାକ୍ତର କହିଲେ ଆଉ ପାଣି ଜମା ହଉନି । ସୁସ୍ଥ ହେଇ ଗାଁକୁ ଫେରିଲା । ଘରେ ମଢ଼ପରି ଶେଯରେ ପଡ଼ିରହୁଥିଲା । ସବୁ କହିଲେ, କାଳେ ବଞ୍ଚିବନି, ହେଲେ ଠାକୁରାଣୀ ପାଖରେ ବୋଦା ପକେଇବ ବୋଲି ଲଳିତା ମନାସିଲା ପରେ କାଳେ ବୁଦ୍ଧିଆ ଉଠି ଚଲାବୁଲା କଲା । ଏବେ ସାମନ୍ୟ ସୁସ୍ଥ ହେଇଚି । ଘରୁ ଆଉ ବାହାରୁ ନାହିଁ । ପୁଅ ମାସେ ରହିଲା, ଯାହା ଟଙ୍କା ପଇସା ଆଣିଥିଲା ସବୁ ସରିଗଲା ପରେ ସେ ବି ସୁରାଟ୍ ପଳେଇଲାଣି ।

ଗାଁ ମଣ୍ଡପ ଉପରେ ବସି କାର୍ଜି କରଣେ କଥା ହଉଥିଲେ, କହୁଥିଲେ ଏଇ କଥାଟା ବୁଝେଇଲେ ସୁଦ୍ଧା ଲୋକ ବୁଝୁନାହାନ୍ତି । ମଦ ପିଇ କାହାର ଭଲ ହେଇଛି କହିଲ ଦେଖି ? ମଦ ତ ନାଇଁ ବିଷ ଯାକ । ମାଧିଆ ପ୍ରଧାନକୁ ଯେତେ ବୁଝେଇଲେ ବି ସେ ଶୁଣିଲା ନାଇଁ, କଣ ହେଲା, ବଡ଼ ଡ଼ାକ୍ତରଖାନାରୁ ଡ଼ାକ୍ତର ଫେରେଇ ଦେଲେ । ଗାଁ ଭିତରକୁ ମଦ ପଶିବ ନାହିଁ, ଆଉ ଖାଲି କହିଲେ ହେବନି । କାର୍ଜିଏ କହିଲେ କିଛି ଗୋଟେ ନିୟମ କରିବାକୁ ପଡ଼ିବ । ବୁଦ୍ଧିଆ ସ୍ତ୍ରୀ ଦୁଆର ସେପାଖେ ଥାଇ କହିଲା ଆମ ମାଇପି ମାନଙ୍କ୍ ଉପରେ ସବୁ ଛାଡ଼ିଦିଅ ମାଷ୍ଟ୍ରେ ଆଜ୍ଞା, ନିୟମ କରିଦିଅ, ଯିଏ ମଦ ପିଇ ଗାଁରେ ପଶିବ ତା'କୁ ମାଇପି ମାନେ ମାଡ଼ ମାରିବେ । ସେଇଠି ହିଁ ନିୟମ ହେଇଗଲା ।

ଏବେ ଗାଁ ମୁଣ୍ଡରେ ପଟାରେ ଲେଖି ଝୁଲେଇ ଦିଆଯାଇଛି, -

**ମଦ୍ୟପ ଲୋକ ଦେଶର ଶତ୍ରୁ**

**ନିଜ ପାଇଁ ମଦ ଛାଡ଼**

**ମଦ ପିଇ ଦେଇ ଗାଁରେ ପଶିଲେ**

**ମାଇପେ ମାରିବେ ମାଡ଼ ॥**






# ପାରିବାରିକ ହିଂସା

ଉଦୟନ ସୂପକାର

ପାରିବାରିକ ହିଂସା ଅଟଇ ଅତି ଗୁରୁତର - ପତ୍ର ପତ୍ରିକାରେ ହୁଅଇ ଏକଥା ପ୍ରଚାର ॥୧

ପୁତ୍ର ଏହି କଥା ଜାଣି ଆଚମ୍ବିତ ହେଲା - ନିଜ ପିତାଙ୍କୁ ଯାଇଣ ପ୍ରଶ୍ନ ପଚାରିଲା ॥୨

ନାରୀ ଉପରେ ଜୁଲମ୍ ପୁରୁଷ କରଇ - ଗଣ ମାଧ୍ୟମ ସର୍ବଦା ଏ କଥା କହଇ ॥୩

ଉଜାଣି ଯମୁନା ବହେ ଆମ ପରିବାଏର୍ - ହିଂସାଦ୍ୱେଷରୁ ହେ ପିତା ଅଛ ତୁମେ ଦୂରେ ॥୪

ପତ୍ନୀର ଉପରେ ପତି କରେ ଅତ୍ୟାଚାର - ତୁମେ କିନ୍ତୁ ପତ୍ନୀ ଆଗେ ଯୋଡ଼ିଥାଅ କର ॥୫

ତାସ୍ଵଲ୍ୟ କରନ୍ତି ମୋତେ ମୋର ସାଥୀମାନେ - ତୁମ ବିନମ୍ରତାର ତୁମେ କୁହ ମୋତେ ମାନେ ॥୬

କହିଲେ ପିତାରେ ପୁତ୍ର କରନାହିଁ ଚିନ୍ତା - ଯା ଆଗେ ଯୋଡ଼େ ମୁଁ କର ସେହୁ ତୋର ମାତା ॥୭

ନିଜ ପତ୍ନୀ ଆଗେ ମାତ୍ର ନଇଁଛି ଏ ମଥା - କେଡ଼େ କେଡ଼େ ବ୍ୟକ୍ତିଙ୍କର କହିବି ମୁଁ କଥା ॥୮

ନେତା ହୋଇ ନାଚନ୍ତି ଯେ ଜନତା ଉପରେ - ଦଣ୍ଡବତ ହୁଅନ୍ତି ମ୍ୟାଡ଼ାମ୍‌ଙ୍କ ଦରବାରେ ॥୯

ନିଜ ପତ୍ନୀକୁ ଦେଖିଲେ ନାକ ଯେ ଟେକନ୍ତି - ମ୍ୟାଡ଼ାମ୍‌ଙ୍କ ପଦରେଣୁ ଶ୍ରଦ୍ଧାରେ ପାଆନ୍ତି ॥୧୦

ତଥାପି ଏମାନେ ଦେଶେ ମହାନ୍ ବୋଲାନ୍ତି - ବିବେକହୀନ ଜନତା ସ୍ତୁତି ତାଙ୍କ ଗାଆନ୍ତି ॥୧୧

ମୁଁ ମୋହର ନିଜ ପତ୍ନୀରେ ରଖିଅଛି ଶ୍ରଦ୍ଧା - ଇତର ଜନଙ୍କ ହୃଦୟେ ହୁଏ କିଆଁ ବାଧା ॥୧୨

ବୈକୁଣ୍ଠ ସମାନ ରହୁ ଆମ ଏଇ ଘର - ତେଣୁ କରେ ରେ ପୁତ୍ର ମୁଁ ପତ୍ନୀର ଆଦର ॥୧୩

ପଢ଼ିଅଛି ଯାହା ମୁହିଁ ଶାସ୍ତ୍ର ଓ ପୁରାଣ - ନାରୀର ସମ୍ମାନେ ପ୍ରୀତ ପ୍ରଭୁ ନାରାୟଣ ॥୧୪




# ବାପୁ ତୁମେ ହାରିଗଲ

ରଶ୍ମୀ ରଞ୍ଜନ ଦାଶ (ବାପୁ)

ବାପୁ ତୁମେ ହାରିଗଲ,

ନବ୍ୟ ଯୁଗର ସଭ୍ୟ ସମାଜେ ହାରିବାକୁ ତୁମେ ବାଧ୍ୟ ହେଲ ।

ଦିନଥିଲା ତୁମେ ଥିଲ ଦିନକର ସଦୃଶ,

ତୁମ୍ଭ ଆଲୋକେ ଆଲୋକିତ ହେଉଥିଲା ଦେଶ ।

ଅହିଂସାର ବାଡ଼ିଟିଏ ଧରି ସତ୍ୟତାର ଖଦଡ଼କୁ ପିନ୍ଧି

କରୁଥିଲ ସ୍ୱାଧୀନତାର ସାଧନା

ଅନଶନ ଅସ୍ତ୍ର ନେଇ ଦୃଢ଼ ମନୋବଳ ଦେଇ

ହେଉଥିଲା ରାମ ରାଜ୍ୟର ରଚନା ।

ନାହିଁ ବାପୁ !!! ନାହିଁ ଆଜି ଆଉ ସେ ଦିନ,

ଲୁଣ୍ଠିତ ହୁଏ ନିତି ତୁମ୍ଭ ମୂଲ୍ୟବୋଧ ମାନ (ମାନ=ସମ୍ମାନ)

ନିତି ଆଜି ଚାଲେ ଏଠି ତୁମ୍ଭର ଚରିତ୍ର ସଂହାର,

ନାଥୁରାମର ହେଉଥାଏ ଜୟ ଜୟକାର ।

'ମହାତ୍ମା' ନୁହନ୍ତି ଆଜି ସେ 'ମୋହନ ଦାସେ'

ମୂଢ଼ ନାଥୁରାମ୍ କିନ୍ତୁ 'ନାଥୁରାମ୍ ବିନାୟକ ଗଡ୍‌ସେ' ।

ତୁମ୍ଭ ସତ୍ୟ ଯୁଝେ ନିତି ଅସତ୍ୟର ସାଥେ

କିନ୍ତୁ ହାରିଯାଏ ସିଏ ପ୍ରତିଟି ମୁହୂର୍ତ୍ତେ ।

ଏଇ ଦେଶ ଭାର ଦିନେ ଦେଇଥିଲା ଯା'କୁ

କେତେ ଦିନୁ ଭୁଲି ଗଲେଣି ସେ ତୁମକୁ ।

ଗାନ୍ଧୀ ଟୋପି ରହିଅଛି ସିନା ତାଙ୍କରି ମଥାରେ

ଚାଲିଯାଇଛନ୍ତି କିନ୍ତୁ ତୁମ୍ଭ ସଂସ୍କାରଠୁଁ ବହୁ ଦୂରେ ।

ଲୁଚାଇ ଖାଇଲ ଯେଣୁ ମାଂସ ପିଲାଦିନେ

ସ୍ୱାଭିମାନ ଛେଳି ସାଜି ପେଟେ କଲା ମେଁ ମେଁ ।

କିନ୍ତୁ ହେ ! ବାପୁ....

ତୁମ୍ଭ ଉତ୍ତର ଦାୟାଦ ଦେଶଟାକୁ ଖାଇଗଲେ ସୁଦ୍ଧା

ହୋନ୍ତି ନାହିଁ ତିଳେ ବିଚଳିତ

କହିଲ ହେ ବାପୁ.. ନୁହଁ କି ଏହା ତୁମ୍ଭ ପରାଜୟ !!!

ରାମରାଜ୍ୟ ଭାର ଦେଇଥିଲ ଯା'କୁ

କରାଏ ସେ ଦୁର୍ନୀତିର ଜୟ ।

ହଁ ବାପୁ ... ମାନୁଅଛି ମୁହିଁ...

ସଭ୍ୟତା ବଦଳିଛି ବଦଳିଛି ସମାଜ, ହୁଏତ ପାଇଛୁ ଆଜି ଆମେ ପୂର୍ଣ୍ଣ ସ୍ୱରାଜ

ଊନବିଂଶ ଗତେ ଏକବିଂଶ ଯେ ଆସିଛି,

ପୁରୁଣାକୁ ଭୁଲି ନୂଆ ଯୁଗ ଆଗେଇଛି ।

କରନ୍ତୁ କାଳିଆ ଦେଶ ମୋର ଆଗଉ ଏପରି

କିନ୍ତୁ ମୂଲ୍ୟବୋଧ ନଯାଉ ମୋ ଦେଶକୁ ଛାଡ଼ି ।

ଏତେ ସବୁପରେ ମଧ୍ୟ...

ହେ ବାପୁ !! ହାରିବାର ନଥିଲା ତୁମ୍ଭର

ହାରି ନ ପାର ଯେ ତୁମ୍ଭେ ।

ତୁମ୍ଭ ହାରିବା ଅଟଇ ପ୍ରଭୂଙ୍କର ଲୀଳା,

ଶେଷ ଚେତାବନୀ ବୋଧେ, ରୋକିବାକୁ ବୁଡୁଥିବା ଭେଳା ।

ସମୟ ଆସିବ ଦିନେ ତମେ ପୁଣି ଲେଉଟିବ

ଅହିଂସାର ଲାଠି ନେଇ ଦୁର୍ନୀତି ତଡ଼ିବ

ସେଦିନକୁ ରହିଅଛି ଚାହିଁ

ହେ ବାପୁ.... ଏ ବାପୁ ସାଥେ ଥିବ ସଦା ରହି ।



# ମୋ ସ୍ୱପ୍ନର ପୃଥିବୀ

ଶ୍ରାବଣୀ ପଟ୍ଟନାୟକ

ଯେତେ ସବୁ ସ୍ୱପ୍ନ ମୋର ମିଳେଇ ଯିବାପରେ

ହଜିଯିବା ପରେ୍

ସବୁଠୁ ନିଜର ଏ ପରିଚିତ ପୃଥିବୀ ଅଜଣା, ଅଚିହ୍ନା ଲାଗେ,

ନୂଆ ଏକ ଚେତନା ରେ ମନ ପୁଣି ତୁମକୁ ଖୋଜେ ବଞ୍ଚିବା ଆଶାରେ....

କୁହ ତ !

ସ୍ୱପ୍ନ ଯଦି ବାଟ ବଣା ହୁଏ

ମୁଁ ସ୍ୱପ୍ନ ଦେଖେ କାହା ପାଇଁ ?

କ୍ଷଣିକ ଆନନ୍ଦ ଆଶାରେ ନା ଆଉ କିଛି ପାଇବା ଆଶା ରେ

ମନ ମୋର ନାଚି ଉଠେ ପୁଣି ନୁଆ ସ୍ୱପ୍ନ ଦେଖିବା ଆଶାରେ !

ସ୍ୱପ୍ନ ଭଙ୍ଗୁର ପୃଥିବୀରେ ସ୍ୱପ୍ନରେ ମୁଁ ବଞ୍ଚେ ପୁଣି ସ୍ୱପ୍ନରେ ହିଁ ପରେ,

ସ୍ୱପ୍ନ ପିୟାସୀ ମୁଁ,

ମୁଁ ଯେ ପ୍ରତିକ୍ଷଣେ ମରି ମରି ବଞ୍ଚେ କେବଳ

ତୁମକୁ ସାମନା ସାମନି ଭେଟିବା ଆଶାରେ ।



# ପ୍ରିୟା ଓ ନିଦ କଥା

ରଶ୍ମୀ ରଞ୍ଜନ

ନିଦ ମାଉସୀ କୁ କହି ପଠେଇଚି ଗାଇ ଶୁଣେଇବ ଗୀତି ..
ଗହନ ନିଦ ରେ ଶୋଇପଡ ତୁମେ ଗପ କହିଦବ ରାତି ..!!
ସୁନା ର ଫୁଲ ଟେ ରୁପା ଚାଙ୍ଗୁଡି ରେ ତୁମ ପାଇଁ ଉପହାର ..
ବିଦାୟ ସଜନୀ ରାତି ସେପାରି ରୁ ; ଆଖି ରେ ଅଳସ ଭର.........!!!

ଆଖି ଦୁଇ ତୁମ ଥକି ଥିବ ପରା ଶୋଇଥାଅ ନିରବ ରେ ..
ଆଉଁସୀ ଦବ ଗୋ ପ୍ରେମ ରେ ପବନ କହିଚି ମୁ ବାରେ ବାରେ ..!!
ଆହୁରି କହିଚି ଭାରୀ ସୁକୁମାରୀ ପ୍ରିୟା ମୋ ; ଗପ ତାକୁ କହିଦବୁ ..
ଭଲ ନାଇ ମୋ ପ୍ରିୟା ର ଦେହ ଟା ; କଥା ତାର ବୁଝୁଥିବୁ .................!!!

ସବୁ ସଂଧ୍ୟା ରେ କହିବ ତ ତୁମେ ଗୀତ ଟେ ମୁଁ ଲେଖିଦେବି ...
ରାତି ବଢିଗଲେ ଗପ ଶୁଣେଇ ମୁଁ ତୁମକୁ ଶୁଏଇ ଦେବି..!!
ଅନ୍ଧାରେ ଯଦି ବାଉଲା ହୁଅ ଗୋ ଥାପି ଦେବି ତୁମ ନିଦ ..
କହିବି ରାତି କୁ ଡରୁଚି ମୋ ପ୍ରିୟା ଧିରେ ଧିରେ ପକା ପାଦ ...........!!!

ରାତିଏ ନିଦ ର ସପନ ଆବେଗେ ବାଉଳା ହୋଇଲେ ସଖୀ ..
ଚୁପି ଚୁପି ଯାଇ ଥାପୁଡ଼େଇ ଦେବି ଆଞ୍ଜୁଳାଏ ନିଦ ମାଖି..!!!



# ମୁକ୍ତି

ସ୍ୱପ୍ନଲତା ମିଶ୍ର (ରଥ)

ପାଦ ମାଟିକୁ ଛୁଁ ଛୁଁ

ମା କୋଳ

ଛୋଟ ହୋଇଯାଏ ।

ଘରଟାବି ଅଣ୍ଟେନା ଆଉ

ବୁଲିବାକୁ, ଖେଳିବାକୁ,

ଗାଁ ଦାଣ୍ଡ ଦେଖିଦେଲା ପରେ ।

ସାରା ଗାଁ ଛୋଟ ଲାଗେ

ଆଖପାଖ ସହରର ନାଁ

ଥରେ ଜାଣିଗଲେ ।

ଅହରହ- ନାଲିନେଳି

ଆଲୁଅର ବରଷାରେ

ଭିଜୁଥିବ ସହରର ରଙ୍ଗ

ଚାହୁଁ ଚାହୁଁ ଫିକା ଲାଗେ

ଦେଶ ମହାଦେଶ ପରି

ଦୂରଦୂରାନ୍ତର ଶବ୍ଦ ସବୁ

ଜ୍ଞାନକୁ ଛୁଇଁଲେ ।

ଏ ପୃଥିବୀ ଚୁପ୍‌ଚାପ୍

ବାଟବଣା ହୁଏ

ମନଯେବେ ଉଡିଯାଏ,

ହଜିଯାଏ ଅଗଣିତ

ତାରାଙ୍କ ମେଳରେ ।

ସୀମାରୁ ସୀମାନ୍ତର ଡେଇଁ

ଉଡୁ ଉଡୁ, ଦିନେ ପୁଣି....

ମନପକ୍ଷୀ ଥକିଯାଏ

ଦେହ ବି ଅବଶ ହୁଏ,

ଅନ୍ତହୀନ ନୀଳିମା ନୁହେଁ

ମାଟି ମା’ ଆପଣାର ଲାଗେ

କେବେ କେବେ

ଆଖି ଆଗରେ ନାଚିଯାଏ

ଗାଁ ଦାଣ୍ଡ

କେବେ ପୁଣି

ମା’ର ଉଷୁମ କୋଳ

ଖୁବ୍ ମନେପଡେ ।

ସ୍ମୃତି ଯେବେ ଫିକା

ଫିକା ପଡ଼ିଯାଏ

ନୟନ ବି ସ୍ୱପ୍ନହୀନ ହୁଏ

ଫେରିବାର ବେଳ ଆସେ

ଆତ୍ମାଟିଏ ମୁକ୍ତି-ମୁକ୍ତି ଝୁରେ ।

ହରେ ରାମ ହରେ କୃଷ୍ଣ

ରାମ ରାମ ହରେ ହରେ

ଏଇ ମାଟି ଏଇ ଧ୍ୱନି

ଏକାକାର ହୁଏ ।

ପାଦ ମାଟି ଛୁଁ ଛୁଁ....

ମା କୋଳ

ଛୋଟ ହୋଇଯାଏ ।



# ମାମୁନ୍

ସୁବାସିନୀ ତ୍ରିପାଠୀ

ନାଁ ଟି ମୋହର "ମାମୁନ୍" ପରା
ପାପା ମାମାଙ୍କର ମୁଁ ସ୍ନେହ ପସରା

କୁନ୍‌ମୁନ୍ ମୁଁ ଯେ ଛୋଟିଆ ଝିଅ
ପ୍ରଣାମ ସଭିଁଙ୍କୁ ଆଶିଷ ଦିଅ

ଅଲିଅଳି ମୁଁ ଯେ ଗୋଲାପ କଢ଼ି
ସଭିଏଁ ଦିଅନ୍ତି ସ୍ନେହ ଅଜାଡ଼ି

ଦୁଷ୍ଟ ମୁଁ ତ କେବେ ହୁଅଇ ନାହିଁ
ତେଣୁ ସୁନାପିଲା ସବୁ ଦିଅନ୍ତି କହି

ଓଡ଼ିଶୀ ନାଚରେ ମୋର ବହୁ ଆଦର
ମନ ମୋହିନିଏ ମୁଁ ସଭିଙ୍କର

ଖିଲି ଖିଲି ହୋଇ ମୁଁ ଯେବେ ହସେ
ସଭିଙ୍କ ମନରେ ଖୁସି ହରସେ



# ସାଜେ ମୁହିଁ ଓଏସିସ୍ ତୁମ ମରୁ ପାଇଁ

ରୀତା ରଥ

ଅଙ୍ଗାରରେ ଲଟ୍‌ପଟ୍ ହେବାଭଳି
ତୁମ ଜୀବନ ମରୁଭୂମି
ହୁ ହୁ ହୋଇ ବହୁଥିବା
ଉତ୍ତପ୍ତ ଶୁଷ୍କ ଲୁ .....

ତା' ପାଇଁ ଏକ ଛୋଟ ଏକ ଓଏସିସ୍ ସାଜିବାର
ଅଦମ୍ୟ ଇଚ୍ଛାରେ
ତୁମ ଜୀବନର ଅନାଗତ ପଥିକକୁ
ମରିଚୀକାର ଭ୍ରମ ନ ଦେଇ
ତା'ର ତୃଷ୍ଣା ମେଣ୍ଟାଇବାର ଅଶେଷ ସ୍ୱପ୍ନରେ
ଖୋଲି ଦେଲି ମୋ ଜୀବନର ପ୍ରତିଟି ଝରକା;
ଧସେଇ ପଶିବାକୁ ଦେଇଥିଲି ତୁମ
ତୁମ ଦାବାନଳ ଅନୁଭବ
ହୃଦୟରେ ସାଉଁଟି ନେଇଥିଲି
ଦାନବର ଅନୁରକ୍ତି
ତା'ମଧ୍ୟରେ ଅକ୍ତା ମାକ୍ତା
କରିଦେବା ପରେ
ଏ ମନର ସବୁଜଳ ବାଷ୍ପକରି
ଆକାଶରେ ମିଶେଇ ଦେବାପରେ
ମୋ ପ୍ରତି ଟିକେ ଆସକ୍ତିର ଆଶା
ମୋ ଲାଗି ଟିକେ ପ୍ରୀତିର ପ୍ରତ୍ୟାଶା
କୁହ ପ୍ରିୟତମ ! ସତେ କି ଏ ଭୁଲ୍ ?
ଆଜି କହୁଅଛ...
ମୁଁ ବି'ତ ମରୁଭୂମି ତୁମେ ବି ନିରସ ଶିଥିଳ
ମରୁ ସିନା ଓଏସିସ୍ ଖୋଜେ
ତୁମ ପାଖେ ଆଜି ନାହିଁ ସେତିକି ସମ୍ବଳ

ସ୍ମୃତି ତୁମ ଘୂର୍ଣ୍ଣିବାୟୁ ପରି ବୁଲେ
ଏ ମନର କୋଣେ ଅନୁକୋଣେ
ଅନୁଭବଟିଏ ପୁଣି ତିଆରି ହେଉ
ଖାସ୍ ତୁମ ପାଇଁ
ଛଳ ଛଳ କରି ନୟନ ଓ ପ୍ରାଣ ।

# ସଂସ୍କାର

ଦେବେନ୍ଦ୍ର କୁମାର ପାଣିଗ୍ରାହୀ

ସତ ଆଉ ମିଛ ଭିତରେ ଫରକ୍
ସଂସାର ଆଉ ସଂସ୍କାର ଭିତରର ଫରକ୍ ପରେ ।
ମାର୍କସୀୟ ଦର୍ଶନ ଆଉ ସାମ୍ୟବାଦର ଇସ୍ତାହାର
ଆଜିର ଯୁବକ ପାଇଁ ଏକ ଅପହଞ୍ଚ ଇଲାକା
ମାଓ-ସେ-ତୁଙ୍ଗଙ୍କ ଚେତନା ବି ଠିକ୍ ସେମିତି,
ତାଙ୍କ ଚିନ୍ତାଧାରାକୁ ବିକ୍ରୀ କରି ମତଲବୀ ଯୁବକ
ହତ୍ୟାକାରୀ ସାଜେ
ସତେ ଯେମିତି ମାଓବାଦୀ ଅର୍ଥ ହତ୍ୟା ଓ ଲୁଣ୍ଠନ ।
ଏ ଦେଶେ ଆସିଲେ ସରକାର ଯେତେ
ତୋଷାମୋଦିଆର ଦଳ
ଚାଲୁଣୀ ଛୁଞ୍ଚିକୁ କହିବା ପରାଏ
ଉପଦେଶ ମାଳ ମାଳ ।
ଭାଷଣ ବାଜିଏ ପୁରେ ନାହିଁ ପେଟ
ଲକ୍ଷ୍ୟ ହାସଲ ରୂପର ସବୁ ଇତସ୍ତତଃ ।
ତଥ୍ୟ ନ ବୁଝି ବାଟ ହୁଡ଼ିଥିବା ଯୁବଶକ୍ତି
ନ ହୁଏ ଜାଗ୍ରତ,
ଶିକ୍ଷା ଦୀକ୍ଷା ସଂସ୍କୃତିକୁ ହରାଇ
ମାଓବାଦୀ ସାଜିବା ତ ଆଜିର ଷ୍ଟାଇଲ୍
ଆମ୍ ଜନତାର ସେଇ ଲକ୍ଷଣ
ନେତା ପର୍ଯ୍ୟନ୍ତ ସବୁଠି ଅପସଂସ୍କୃତି
ଫମ୍ପା ଆବାଜରେ ସଭିଏଁ ସ୍ତମ୍ଭିତ
ଯୁଗ ଜନ୍ମା ସୁଭାଷ, ଭଗତ, ବାଜି ରାଉତ
କେଉଁ ବିସ୍ମୃତିର ଅତଳ ଗର୍ଭରେ ଶାୟିତ
ତଥାପି ବଞ୍ଚିଛି ଏ ଦେଶ
କିମାଶ୍ଚର୍ଯ୍ୟମ୍ ଅତଃ ପରମ୍ ।



# ପ୍ରେମ ପାଗଳ

ଚନ୍ଦ୍ର ଶେଖର ବିଶ୍ୱାଳ

ପ୍ରେମ ପ୍ରେମ ସତେ କରୁଛି ଭାରି ଗଣ୍ଡଗୋଳ
କିଏ କହେ ଏଠି ମୁଁ ପ୍ରେମୀ ମୁଁ ପାଗଳ
କିଏ କହେ ପୁଣି ଆମେ ଅଟୁ ରାଧାକୃଷ୍ଣ ପରି ଯୁଗଳ
ଆମ ପ୍ରେମ ଅଟେ ଭାରି ବିରଳ ଆଉ ଅନାବିଳ
କିଏ କହେ ମୁଁ ଅଟେ ମୋ ପ୍ରେମେ ଅଟଳ
କିଏ ପୁଣି କହେ ପ୍ରେମ ମୋର ଖାଲି ହୁଏ ଟଳମଳ ।

ଏମାନେ ଅଟନ୍ତି ଭାରି ପ୍ରେମ ପାଗଳ,
ପ୍ରେମପାଇଁ ନିଜ ଜିଦ୍‌ରେ ଅଟଳ,
ପ୍ରେମ ପାଇଁ ମଧ୍ୟ କରିପାରନ୍ତି ପ୍ରିୟଜନଙ୍କ ସହ ଗଣ୍ଡଗୋଳ ।
ଆଜିକାଲି ପ୍ରେମରେ ପ୍ରେମିକାମାନେ ଟିକେ ବିରଳ,
କାରଣ ଗୋଟିଏ ପ୍ରେମିକା ପାଖରେ ପ୍ରେମିକ ଥା'ନ୍ତି ମାଳମାଳ ।

ଏମାନେ ହେଲେ କଳିଯୁଗର ପ୍ରେମପାଗଳ,
ଏମାନଙ୍କ ପାଇଁ ନାହିଁ ଯମୁନା କୂଳ କିମ୍ବା କଦମ୍ବମୂଳ
ପ୍ରେମିକାର କୋଳ ସତେ ଲାଗେ ବର ଓହଳ,
ପାର୍କର ପ୍ଲାଷ୍ଟିକ ଗଛ, ସତେ କଦମ୍ବର ମୂଳ ।

ଯଦି ଚାହୁଁଥାନ୍ତି ଦେଖିବାକୁ ଏମିତି ପ୍ରେମାଳ,
ଯାଆନ୍ତୁ ଦେଖିବେ ପାର୍କରେ, ହାତ ଧରି ବୁଲୁଛନ୍ତି ହଳ ହଳ,
ଏମାନଙ୍କ କାମ ହେଲା କୁକୁରଠାରୁ ବି ତଳ,
ପ୍ରେମିକା ସାଜିଥାଏ କେଉଁଠି ପ୍ରେମିକର ଗଳାମାଳ,
ଆଉ ପ୍ରେମିକ ପଢୁଥାଏ ପ୍ରେମିକା ଶରୀର ଭୂଗୋଳ ।

ପ୍ରେମୀଙ୍କ ପାଇଁ ନୂଆ କିଛି ନାହିଁ,
ହେଲେ, ତାଙ୍କୁ ଦେଖିବାପାଇଁ ପାର୍କରେ ସବୁବେଳେ ଗୋଳମାଳ ।



# ଚଳନ୍ତି ପ୍ରତିମା

ସରୋଜ ମିଶ୍ର

ଜଣେ କ୍ଷୀରସର ଆରଟି ଛେନା,

ଜଣେ ରୂପା ହେଲେ ଆରଟି ସୁନା ।

ଜଣେ ଜଗନ୍ନାଥ ଜଣେ ଲକ୍ଷ୍ମୀ ମା,

ଜଣେ ଆଲିଙ୍ଗନ ଆରଟି ଚୁମା ।

ଜଣଙ୍କ ଆଙ୍ଗୁଠି ଜଣଙ୍କ କାନି,

ଇଏ ଶବ୍ଦ ହେଲେ ସେ ପ୍ରତିଧ୍ୱନି ।

ଜଣେ ଜଳ ହେଲେ ଜଣେ ଅବନୀ

ଜଣେ ଖରା ହେଲେ ଜଣେ ଚାନ୍ଦିନୀ ।

ଗୋଟିଏ ହସ ତ ଗୋଟିଏ କାନ୍ଦ

(ମୋ) ଜୀବନ ସୂତାର ଦୁଇଟି ଛନ୍ଦ ।

ତାଙ୍କ ଉପଦେଶ ମୋ ପାଇଁ ସ୍ୱର୍ଗ

ଜଣେ ସ୍ୱର ହେଲେ ଆରଟି ରାଗ ।

ମୋ ଦୁଇ ଆଖିର ଦୁଇଟି ଜ୍ୟୋତି

ଜଣେ ଲୁହ ହେଲେ ଆରଟି ମୋତି ।

ଜଣେ ପାଣିଟୋପା ଜଣେ କାକର

ଜଣେ ଧୈର୍ଯ୍ୟବାନ ଜଣେ ଅଧୀର ।

ଗୋଟିଏ ନିକିତି ଦୁଇଟି ପଲା,

ତାଙ୍କରି ଆଖିରେ ମୁଁ ଏବେ ବି ପିଲା ।

ଦୁଃଖେ ଭାଙ୍ଗିଗଲେ ସିଏ ସାହାସ

ମିଠା କଥା କହି କରନ୍ତି ବଶ ।

ପଲକେ ହଜିଲେ ତାଙ୍କ ଆଖିରୁ,

ପଦେ ନ ହଟନ୍ତି ଦାଣ୍ଡ ଦୁଆରୁ ।

କେବେଠୁ ଗଲାଣି ଦେଖାତ ନାହିଁ,

ଚାହିଁ ବସିଥାନ୍ତି ଭାତକୁ ଥୋଇ ।

ଭୋକ ଲାଗିଲାଣି ହାତ ଧୋଇବା

ଭୋକନାହିଁ ସିଏ ଆସୁ ଖାଇବା ।

ଏଭଳି ତ୍ୟାଗର କି ପ୍ରତିଦାନ

ତଥାପି ଶୁଣୁଛି ଏଭଳି କାନ ।

ପୁଅ ବୋହୁଙ୍କର ରାଜ ଉଆସ

ବ୍ୟାଙ୍କ ବାଲାନ୍ସ କଲା ରାକ୍ଷସ ।

ନିରର୍ଥକ ହୁଏ ତାଙ୍କରି ଶ୍ରମ

ଆଶ୍ରୟ ତାଙ୍କର ଅନାଥାଶ୍ରମ ।

ଦିନ ରାତି ଯିଏ ଏକାଠି କରି

ପୁଅଲାଗି ସବୁ ଦେଲାରେ ସାରି ।

ଏଭଳି ପୁଅଙ୍କୁ କି ଭଳି ଦଣ୍ଡ

ଶ୍ରୋତାଏ କୁହନ୍ତୁ ଖଟାଇ ମୁଣ୍ଡ ।

ତୁମ ଆଶୀର୍ବାଦ ମୋ ମୁଣ୍ଡେ ଥାଉ

ଏଭଳି ଘଟଣା ମୋ ପାଢ଼େ ନୋହୁ ।

ସ୍ନେହ ମମତାର ଦୁଇ ମୁରତି

ନନା-ବୋଉ ତୁମ ପାଦେ ପ୍ରଣତି ।

# ହଜିଗଲେ ଥରେ

ଡ଼ା. ନୀଳମାଧବ କର

ସହଜରେ
ପର ହୋଇଯାଉଥିବା
ଆପଣା ଲୋକମାନଙ୍କର
ଏଇ ପୃଥିବୀରେ
ନିଜର ବୋଲି
ପରଟିଏ କୁ ପାଇବା
ତାଙ୍କୁ ପାଇବା ପରେଇ ।

ତେଣୁ
ଦୁଃଖ ହୁଏ
ଅସାବଧାନତାରେ
ଅକର୍ମଣ୍ୟତାରେ
ଲାଜରେ
ମିଛ ମିଛ ରାଗରେ
ରୋଷରେ
ଅଜାଣତରେ
ଦୂର ହୋଇଗଲେ
ପରଟିଏ ଭିତରେ ଛପିଥିବା
ନିଜ ଲୋକ !

ଯେଣୁ
ହଜିଗଲେ ଥରେ
ଆଉ ମିଳେ ନାହିଁ
ଆଉ ଜନମରେ
ଏ ଜୀବନ
ଜିଇଁ ହୁଏ ନାହିଁ ।

# ଫେସ୍‌ବୁକ୍

ନଗେନ ସାମଲ

ସୋସିଆଲ୍ ନେଟଓ୍ୱାର୍କ୍ ର ସିଂହାସନେ

ହୋଇ ବିରାଜମାନ

ଦେଶ ବିଦେଶର ଜନତାଙ୍କୁ କରାଅ

ଭାବର ଆଦାନ ପ୍ରଦାନ

ଅର୍କୁଟ୍ ଘାଟିର ତୁମେ କରିଲ ପତନ

ରାଗ ତମ ତମ ହୁଏ ଗୁଗୁଲ୍ ସର୍ଚ୍ ଇଞ୍ଜିନ୍

କହେ ଗୁଗୁଲ୍ ପ୍ଲସ୍ ଗଢ଼ି ଗଡ଼ ଜିତିନେବ,

ହୋଇ ଯା ପ୍ରିପେର୍ ତାର ବିକଳ୍ପ କାଢ଼ିବ ।

ଚଢ଼ିଅଛ ନିଶା ହୋଇ ଯୁବତୀ ଯୁବକଠି

ତୁମ୍ଭ ବଳ ମାପିବାକୁ ପାଉ ନାହିଁ କାଠି ।

ତୁମ୍ଭ ଜରିଆରେ କେତେ କେତେ ଉପକୃତ

ହେଉଅଛି ବିଦେଶ ଅଥବା ଭାରତ ।

ନିକଟ ଅତୀତରେ ଆମେ ଆମ ଆନ୍ନାଙ୍କୁ

ଦେଉଥିଲୁ ଭୋଟ୍ ଲୋକପାଳ ବିଲ୍ ଆଣିବାକୁ ।

କେତେ କେତେ ସାଙ୍ଗ ଆମ ଫୋଟ ଯେ ପକାନ୍ତି

କମେଣ୍ଟ ଦେଇ ସଭେଁ ତାଙ୍କ ମଜା ବି ନିଅନ୍ତି ।

ଯଦି କିଛି କମେଣ୍ଟ୍ ସେବେ ମନକ୍ ଆସେନି

ଲାଇକ୍ କରିବାକୁ ସାଙ୍ଗ କେବେ ବି ଭୁଲେନି ।

ଦୁଃଖରେ ସୁଖରେ କେହି ତାର ଷ୍ଟାଟସ୍ ଲେଖିଦିଏ
ବନ୍ଧୁ ବା ବାନ୍ଧବୀ ତାର ହାଲ୍ ଜାଣି ନିଏ ।
କେବେ କେହି ଦେଇଥାଏ ସାନ୍ତ୍ୱାନାର ଭାଷା
କେହି କେବେ ଗଢ଼ିଦିଏ ମାନସ ବିଳାସ ।

ତବ ପୃଷ୍ଠେ ହୋଇଥାଏ ଧର୍ମ ସମନ୍ୱୟ
ହିନ୍ଦୁ ମୁସଲିମ୍ ଖ୍ରୀଷ୍ଟିଆନର ଉଦୟ ।
ଗଣେଷ ଚତୁର୍ଥୀ ମୁସ୍ଲିମ୍ ଭି ପାଳଇ
କେହି ବଡ଼ ସାନ ଏଠି ଜମାରୁ ନଥାଇ ।

ଲଗିନ୍ କ୍ଷଣେ ଖୋଜେ ମନ ନୋଟିଫିକେସନ
ଫ୍ରେଣ୍ଡ୍ ରିକ୍ୱେଷ୍ଟ କିମ୍ବା ମେସେଜ୍ କଲମ୍ ।
ଟିପି ଟାପି ଦେଖି ଚାଲ ସବୁଜାକ ଲିଂକ୍
ଗେମ୍ ଖେଳି ଜିତିଚାଲ୍ ଲେବଲ୍ ଟିକ୍ ଟିକ୍ ।

କିନ୍ତୁ ବନ୍ଧୁ ସାବଧାନ !!
ଆମ ଗାଁ ମେଳରେ ଯେମିତି ପକେଟ୍ ମାରୁ ଥା'ନ୍ତି
ଏଠିବି ବହୁତ୍ ବହୁତ୍ 'ଭାଇରସ୍' ଛାଡୁଛନ୍ତି ।
ଅଜଣାକୁ କର ଭାଇ ଦେଖି ଚାହିଁ ସାଙ୍ଗ
ଅଜଣା ଲିଂକ୍‌ରେ ଦେଖି ଚାହିଁ ଦିଅ ପାଦ ।

ଶେଷ ଲାଇନ୍ ଭାଇ ଧନ୍ୟବାଦ ଦେବା
ଫେସ୍‌ବୁକ୍ ର ବାପା ମାର୍କ ଜୁକେର୍‌ବର୍ଗ୍
ବଢ଼ିଆ ସାଇଟ୍ ଟେ ତିଆରି କରିଛ ହେ ଭାଇ
ଏଇଠି ରହିଲୁ ଆମେ ତୁମ୍ଭ ଗୁଣ ଗାଇ ।



# ଅଣ ନିଃଶ୍ୱାସୀ

ନିରୁପମା ମହାନ୍ତି

ଭାବନାର ଜାଳରୁ ଖିଅଟିଏ ସୁତା
ସଜାଡୁ ସଜାଡୁ......
ଗୁଡ଼େଇ ହୋଇଯାଏ
ବୁଢ଼ିଆଣୀ ମନ ମୋର
ଘୁରି ଘୁରି...
ହୋଇଯାଏ... ଅଣନିଃଶ୍ୱାସୀ ।

କିଏ ଜାଣେ ସେ ଜାଳରେ
ଉଡ଼ିଆସି ବସିଯାଏ ନିରୀହ ମାଛିଟି
ଯାଇ ତ ପାରେନି
ହୁଏ କେବଳ... ଅଣନିଃଶ୍ୱାସୀ ।

ଅଙ୍କଟିଏ କଷୁ କଷୁ
ସମୟ ତ ଗଡ଼ିଚାଲେ
ସମାଧାନ କିଆଁ ସେ ହୁଏନା
ଛଟପଟ ମନ ମୋର
ସେ ଚିନ୍ତାରେ
ହୋଇଯାଏ... ଅଣନିଃଶ୍ୱାସୀ ।

କଣ କରିବି...
ଧର୍ମ ତ ଗୋଟି ଗଣିତ
କ୍ଷୀରବାଲା, ପେପର୍ ବାଲା
ଘର ସଉଦା, ବାପାଙ୍କ ଔଷଧ
ମା ଚଷମା ଭାଙ୍ଗି ଯାଇଛି
ପୁଅ ଜୋତା ଛିଣ୍ଡି ଗଲାଣି
ତିନି ମାସ ହେଲାଣି
ଓହ୍ଃ... ଅଣନିଃଶ୍ୱାସୀ ।

ବାପା କହୁଛନ୍ତି ତିନି ତିନି ଟା ଝିଅ
ଘରେ ବସିଲେଣି...

ବର କହୁଛନ୍ତି
ବୟସ ଗଡ଼ିଗଲାଣି
ଟିକେ ଅଧିକ ଦିଅ
ସେ ଚିନ୍ତାରେ ... ଅଣନିଃଶ୍ୱାସୀ ।

ଘର ଖଣ୍ଡେ ନାହିଁ
ଚାକିରୀ ପରେ ରହିବି କୋଉଠି
କିରାଣୀ ପଇସା
ଅସ୍ତବ୍ୟସ୍ତ ମୁଁ
ମନ ମୋର... ଅଣନିଃଶ୍ୱାସୀ ।

ଉଃ...
କି' ଟାଣ ଖରା
ପାଣି ଟୋପାଏ ମିଳୁନି
ଶୋଷରେ... ଅଣନିଃଶ୍ୱାସୀ ।

ଏତେ ବର୍ଷ...
ବନ୍ୟା ଆସିଗଲା
ବୁଡି ଗଲା ଘର
ଭଉଁରୀ ଭିତରେ
ମୁଁ... ଅଣନିଃଶ୍ୱାସୀ ।

ଜୀବନର ଜଉଘରେ
ଜଳିବାନି ଜଦି
ଅର୍ଧ ଦଗ୍ଧ ହୋଇ
ହୋଇଯିବା... ଅଣନିଃଶ୍ୱାସୀ ।

ଦୁନିଆରେ...
ମୁଁ, ତୁମେ, ସେ....
ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର,
ପଶୁ, ପକ୍ଷୀ, କିଟପତଙ୍ଗ
ସମସ୍ତେ
ପ୍ରକାରାନ୍ତେ...
ହୋଇଥାନ୍ତି... ଅଣନିଃଶ୍ୱାସୀ ।

# ‘‘କୋହ’’

ରଞ୍ଜିତା ପଣ୍ଡା

ହଜିଯାଏ ସେ ସେ ସ୍ମୃତି ସୌନ୍ଦର୍ଯ୍ୟର ତାଳେ ତାଳେ
ସୁମଧୁର ଆଶା ଜଳେ...
ସନ୍ଧ୍ୟାର ନିଃସ୍ତବ୍ଧ ସ୍ୱରେ ଭ୍ରଷ୍ଟାଚାର ବ୍ୟାପିଚାଲେ..
ନିରାକାର, ଅହଂକାର ପ୍ରତାରଣାରେ ଭରେ ସଂସାର,
ଅଶ୍ରୁର ମୂଲ୍ୟ ନାହିଁ କିଛି...
ବାସନାର ଚକ୍ରବ୍ୟୁହରେ ପଡେ ଜୀବନ କାହାର,
ଶରୀରର ବାସନାଟେ ମିଟେ କେତେ ସ୍ୱପ୍ନ ଏଠି,
ସମ୍ପର୍କର ମିଛ ଲାଳସାରେ ହଜିଯାଏ କେତେ ରାତି,
କେତେ ନିରୀହଙ୍କ ରକ୍ତରେ ରଞ୍ଜିତା ଏଇ ମାଟି ମୋର,
ଧନ ଲାଳସାରେ ବହିଯାଏ ରକ୍ତର ଗଙ୍ଗା ଏଠି,
ପ୍ରେମର ପରିଭାଷାଠୁ ଅପରିଚିତ ଏ ମନୁଷ୍ୟ,
ସ୍ୱାର୍ଥ ପାଇଁ ବଳିପଡ଼େ ନିରୀହ ଜୀବନ
ଜୀବନ ଥାଇ ଆଜି ମନୁଷ୍ୟ ମୃତ,
ହୃଦୟର କୋହ,
ନାରୀର ପବିତ୍ରତା ଆଜି କ୍ଷଣକେ ହଜିଯାଏ,
ଇଜ୍ଜତର ଅର୍ଥ ଏଠି ପଇସା ସାଙ୍ଗେ ତୋଳା ଯାଏ,
ଅସରନ୍ତି ସ୍ୱପ୍ନ ଏଠି ହଜି ହଜି ଯାଏ,
ଅଶ୍ରୁଭରା ନେତ୍ରରେ ମୁଁ ଖାଲି ଶାନ୍ତି ଖୋଜୁଥାଏ ॥

# ଜୀବନ

ସୁନିତା ଦାସ

ଜୀବନ

ଜିଜ୍ଞାସାଟିଏ ଅଥବା ଅନୁଭବ ଟିଏ,

କେଉଁଠୁ ଆରମ୍ଭ ସିଏ ?

ଆଉ କେଉଁଠି ତା’ ଶେଷ ?

କେତେବେଳେ ଦୁଃଖର ନଇ,

ସୀମାହୀନ ଶୋକ ସିଏ

ଯା’ର ଥଳକୂଳ ନାହିଁ ।

କେତେବେଳେ ସୁଖର ଆସର

ଚେନାଏ ହସର କଅଁଳ ସ୍ପର୍ଶ ଟିଏ ।

ପ୍ରେରଣାର ପ୍ରମାଣଟେ କେତେବେଳେ,

କେତେବେଳେ ଆକାଂକ୍ଷା

        ପରିପୂର୍ଣ୍ଣ ଅଭୀପ୍‌ସା ଆଉ

        ଇନ୍ଦ୍ରଧନୁର ବର୍ଣ୍ଣାଳୀଟିଏ ।

କେତେବେଳେ,

        ଭାବପ୍ରବଣତା,

        ପୁଣି କେତେବେଳେ

                ଅବୋଧ୍ୟ କବିତାଟିଏ ।

ବାସ୍ତବତାର ଖୋଳରେ

        ଜ୍ୱଳନ୍ତ ସଳିତା ଟିଏ

ନହେଲେ

        ସାମୟିକ କୋଳାହଳ ଟିଏ,

ଚାରିପଟେ,

        କିନ୍ତୁ

        ଯୁଗ ଯୁଗର ନୀରବତା ।



# ଜାଗରେ ଭାରତର ବୀର ପୁତ୍ର

ଆଦିତ୍ୟ ସାହୁ, ମୁମ୍ବାଇ

ଉଠରେ ଉଠରେ ମୋର ବିପ୍ଳବୀ ସନ୍ତାନ

ଉଠ ଥରେ ତୁମେ ନିଦ୍ରା କରି ଭଗ୍ନ

ଭ୍ରଷ୍ଟାଚାର ରାକ୍ଷସ ଆଜି କରିଛି ଆକ୍ରମଣ

ସରକାର ଆମ ହୋଇଛି ଅକର୍ମଣ୍ୟ

ଶୋଇ ରହିବୁ ତୁ ଆଉ କେତେ ଦିନ

ଚେଇଁ ଶୋଇ ରହିଲୁଣି ତୁ ବହୁଦିନ

ଏକା ସେ ଆନ୍ନା କରେ ଆନ୍ଦୋଳନ

ଏକା ସେ କରିବ ଆଉ କେତେ ଦିନ ?

ଦେଶପ୍ରମ ଭାବ ତୋର ମଉଳି ଗଲା କି ?

ଶୁଣି ଛାର ସ୍ୱାନର ଗର୍ଜନ

ଆରେ ଆମ ସରକାର ସ୍ୱାନ ଠାରୁ ହୀନ

ତୁ ଯେ ଅଭିମନ୍ୟୁ ସପ୍ତ ରଥୀ ସହ ସମାନ

ଉଠରେ ମୋହର ଦେଶ ଯୁବ ଶକ୍ତି

ଭାରତ ମାତା ଆଜି କରଇ ଆହ୍ୱାନ

ଉଷ୍ମ ରକ୍ତ ତାର ପାଦେ ଢ଼ାଳି ଦିଅ

କର ଭ୍ରଷ୍ଟାଚାରକୁ ଦମନ

ମା'ର ପଣତ ତଳେ ଲୁଚିକୁ ଆଉ କେତେ ଦିନ

ଭାରତ ମା' ତୋ ମା ପରି ସମାନ

ଗୋଟିଏ ମା' କଥା ଭାବି କରୁ ପ୍ରତ୍ୟାବର୍ତ୍ତନ

ହେଲେ କୋଟିଏ ମା ଆଜି ହୁଅନ୍ତି ଉଲଗ୍ନ ॥

ତୋ ଦେଶେ ଜନ୍ମିଛି ଗାନ୍ଧୀ ଗୋପବନ୍ଧୁ

ତୁ ଯେ ଅଟୁ ତା'ର ଅମୃତ ସନ୍ତାନ

ଉଠି ଥରେ ଦେଖ ଖୋଲି ତୋ ନୟନ

ଭାରତ ମା ଆଜି କରେ ଅଭିମାନ ॥

ଶୁଣରେ ମୋହର ସୁପ୍ତ ଯୁବଶକ୍ତି

ନା କର ତୁ ପଳାୟନ

ତୋ ଦେହେ ବହିଚି ବୀରର ରକତ

କର ଭ୍ରଷ୍ଟାଚାର ରାକ୍ଷସର ଦମନ ॥



# ହଜେଇ ଦେଇଛି ନାଁ କୁ...

ବିଷ୍ଣୁ ପ୍ରସାଦ ଚୌଧୁରୀ

ହଜେଇ ଦେଇଛି ନାଁ କୁ
ଗୁଡୁଲୁ ରୁ ଗୁରୁପ୍ରସାଦ ଏକ ବିଶାଳ ସମୟର ଦୂରତା

ଆଜି ଯେବେ ମନେପଡ଼େ ସେ ଗୁଡୁଲୁ ର ସ୍ନେହଭରା ଡ଼ାକ
ସ୍ମୃତି ଭରା ସେ ଅତୀତ
ସାଙ୍ଗମାନଙ୍କ ସହ ଝଗଡ଼ା
ସ୍କୁଲର ମିଠା ମିଠା ଖେଳକୁଦ ପରିବେଶ
ଆଉ କାଶତଣ୍ଡୀ ଫୁଲ ନଦୀପଠାର ମୃଦୁହସ
ଗ୍ରୀଷ୍ମ ଦିନର ଆମ୍ବତୋଟାର ଆମ୍ବଚୋରି
ପୁଣି ସେ ଜଗୁଆଳିର ବିକଟାଳ ରଡ଼ି
ଖରାଛୁଟିର ଦିନରାତି କ୍ରିକେଟ୍ ଖେଳ
ଆଉ ସବୁ ଖୁସି ଭରା ପିକ୍ ନିକ୍ ବେଳ
ମନେପଡ଼େ ଯେବେ ଆଖିରୁ ଝରିଆସେ ଲୁହ

ହୁଁ... ବସିଛି ଆଜି ସେ ଏ ଏସି କୋଠରିରେ
ପଞ୍ଚତାରକା ହୋଟେଲ୍‌ର ମୃଦୁ ଆଲୋକରେ
ତଥାପି ମନେପଡ଼େ ସେ ଦୀପ ଅନ୍ଧାରକୁ
ପଢୁଥିଲା ସାଙ୍ଗସାଥି ମେଳେ ଟିକିଟିକି ଆଖିରେ
ହଜିଯାଉଥିଲା ଅନ୍ଧାରର ଲୁଚକାଳି ଖେଳରେ

କଣ ଆଜିର ଏ ଗୁରୁପ୍ରସାଦ ଭୁଲି ପାରିବ କି ତା ବାବୁପଣ
ଫେରି ପାଇବାକୁ ଗୁଡୁଲୁ ର ସବୁ କୋଣ ଅନୁକୋଣ
ଆଉ ତା ସ୍କୁଲ୍‌ର ସେ ପିଲାବେଳ
ଆଉ ହସଖୁସି ଭରା ସାଙ୍ଗସାଥି ମେଳ
କଣ ସେ ହଜେଇ ପାରିବ ତା'ର ଏ ନାଁ କୁ
ଫେରି ପାଇବାକୁ ସେ ଗୁଡୁଲୁ ର ସ୍ନେହଭରା ଡ଼ାକ କୁ....




# କଥା ଓ କବିତା

ଇଣ୍ଟରନେଟ୍‌ରେ ଫେସ୍‌ବୁକ୍ ସୋସିଆଲ୍ ନେଟ୍‌ୱାର୍କିଂ ୱେବ୍‌ସାଇଟ୍‌ରେ ବିଭିନ୍ନ ଗୋଷ୍ଠୀ ବା ଗ୍ରୁପ୍ ରହିଥିବା ସମୟରେ 'କଥା ଓ କବିତା'ର ଉଦ୍‌ଭବ ହୁଏ ଏମିତି ଏକ ସମୟରେ ଯେତେବେଳେ ଓଡ଼ିଆ ସାହିତ୍ୟକୁ ଏକ ନବଦିଗନ୍ତ ଦେବା ଦିଗରେ ଆହ୍ୱାନ ଓଡ଼ିଆ ପରିବାର ଆଗଭର ହେଉଥାଏ । ଭାଷାକୁ ସର୍ବବ୍ୟାପୀ କରିବା ଦିଗରେ ଅନେକ ସଂଗଠନ ଉଲ୍ଲେଖଯୋଗ୍ୟ କାର୍ଯ୍ୟ କରୁଥିବା ସମୟରେ ଆମେ ଆଣି ଦେଇଛୁ ଏପରି ଏକ ଗ୍ରୁପ ଯେଉଁଠି ସମସ୍ତ ସଦସ୍ୟ ଲେଖା ଯାହା ବି ଦିଅନ୍ତି ସବୁ ଦିଅନ୍ତି କେବଳ କବିତା ଆକାରରେ ।

ଅନ୍ୟ ସମସ୍ତ ଗ୍ରୁପ୍ ଠାରୁ 'କଥା ଓ କବିତା' ଅଲଗା କାରଣ ଏଠାରେ କେବଳ ସେହିମାନେ ହିଁ ସଦସ୍ୟତା ଗ୍ରହଣ କରିଥାନ୍ତି ଯେଉଁମାନେ କବିତା ପ୍ରତି ଆକୃଷ୍ଟ । ଏହି ଗ୍ରୁପକୁ ଦେଖିବାପରେ ଏହାର ସଦସ୍ୟ ହେବାର ଇଚ୍ଛାକୁ କେହି ଦମନ କରି ପାରି ନାହାନ୍ତି ।

ବର୍ତ୍ତମାନ 'କଥା ଓ କବିତା' ଗ୍ରୁପ୍‌ରେ ପ୍ରାୟ ୭୫ ଜଣ ସଦସ୍ୟ ଅଛନ୍ତି, ଏବଂ ପ୍ରତିଦିନ ଅସଂଖ୍ୟ କବିତା ଏହି ଗ୍ରୁପ୍‌ରେ ପ୍ରକାଶିତ ହେଉଛି । ଏବଂ ଜଣେ ସଦସ୍ୟ କବିତା ପ୍ରକାଶିତ କରିବା ପରେ ସେହି କବିତା ଉପରେ ଦିଆଯାଉଥିବା ମନ୍ତବ୍ୟ ମଧ୍ୟ କବିତାରେ ହିଁ ଦେବା ଅନିବାର୍ଯ୍ୟ, ହୋଇଥିବାରୁ ଏହି ଗ୍ରୁପର ପରିବେଶ ସଂପୂର୍ଣ୍ଣ କବିତାମୟ ଲାଗେ ।

ପ୍ରତି ମାସରେ ଆହ୍ୱାନ ପତ୍ରିକାରେ ଏହି 'କଥା ଓ କବିତା' ଗ୍ରୁପ୍‌ରେ ପ୍ରକାଶିତ କବିତା ମାନଙ୍କ ମଧ୍ୟରୁ କିଛି କବିତା ପ୍ରକାଶିତ କରାଯିବ । ଚଳିତ ମାସରେ ଏହି ଗ୍ରୁପରେ ପ୍ରକାଶିତ କିଛି କୃତିକୁ ଏହିଠାରେ ପ୍ରକାଶିତ କରାଯାଇଛି । ଆଶା କରୁଛି ଆଗାମୀ ଦିନରେ ଏହି ଗ୍ରୁପରେ ଅଧିକରୁ ଅଧିକ ସଦସ୍ୟ ସଦସ୍ୟା ହେବେ ।

ଅତୀତରେ ଓଡ଼ିଶାରେ ଥିଲା ଏକ ସମୃଦ୍ଧ ପରମ୍ପରା । କବିତାରେ ଏବଂ ପଦ୍ୟରେ ତଥା ଢ଼ଗ ଦ୍ୱାରା ପରସ୍ପର ସହ ଭାବର ଆଦାନ ପ୍ରଦାନ କରାଯାଉଥିଲା । ଅବଶ୍ୟ ଏଥିରେ ବିଭିନ୍ନ ଯୁକ୍ତାକ୍ଷରକୁ ଭାଙ୍ଗି ସରଳ କରି କବିତାର ସୁର ସହ ତାଳ ଦେଇ ପାରିବା ପରି ପରିବର୍ତ୍ତିତ କରି ଦିଆଯାଉଥିଲା । ସେହି ସମୃଦ୍ଧ ପରମ୍ପରାକୁ ସାଂପ୍ରତିକ ସମୟରେ ଅନୁଭବ କରିବାର ସର୍ବଶ୍ରେଷ୍ଠ ସ୍ଥାନ ହେଉଛି 'କଥା ଓ କବିତା' । ଆମ ଗ୍ରୁପ୍‌ରେ ସଦସ୍ୟ ହେବାପାଇଁ ନିମ୍ନରେ ଦିଆଯାଇଥିବା ଲିଂକ ଉପରେ କ୍ଲିକ୍ କରନ୍ତୁ । ଧନ୍ୟବାଦ ।

https://www.facebook.com/groups/146695028745928/




ଲକ୍ଷ୍ମୀ ନାରାୟଣ ପଟ୍ଟନାୟକ

ମନ କୁ ପାଇଲା ଜ୍ୟୋତି ଭାଇଙ୍କର ଏହି ସଙ୍ଗଠନ ରୀତି
କବିତାରେ କଥା... କବିତାରେ ବାର୍ତ୍ତା ନିତି କରିବାକୁ ଏଠି,

ଭାଦ୍ରବ ମାସ'ର ବୁଧେଇ ଓଷାର ଶେଷ ପାଳିଥିଲା ଆଜି,
ଅଫିସ୍‌ରୁ ଫେରି ଖିରି ପିଠା ଖାଇ ନେଟ୍‌ରେ ଗଲି ମୁଁ ହଜି ।

ଖବର ମିଳିଲା ଜ୍ୟୋତି ଭାଇଙ୍କର ନୁଆ ଏହି ଆବିଷ୍କାର,
ମନ କୁ ମୋହିଲା... ହୃଦୟ ଛୁଇଁଲା ନିତି ଆସିବି ମୁଁ ଏଠାର ।

ଧନ୍ୟବାଦ ମୋର ଶ୍ରାବଣୀ ନାନି'କୁ ଜଣାଇବ ଜ୍ୟୋତି ଭାଇ,
ସୁନା ନାକି ସାନ ଭଉଣୀକୁ ମୋର ଆଶୀର୍ବାଦ ଦେବ କହି ।

ବେଦ ପ୍ରକାଶ ରଥ

ଜ୍ୟୋତି ପ୍ରସାଦ ପଟ୍ଟନାୟକ->
ଡାକ୍ତର ବାବୁ ମରିଗଲି,
ଅଜବ ଜାଗାରେ ଫସିଗଲି,
ଯଦି କରିଦେବେ ମୋତେ କବି
ଇଞ୍ଜିନିୟରିଂ ପାଠ ସବୁ ଯିବ ଦବି,
ସୁପ୍ରଭାତ ବୋଲି କହିବାକୁ
ଆସିଥିଲି ଏଠାକୁ
କହିଦେଲି ଏବେ ଫେରୁଛି ମୋ ଜାଗାକୁ ॥

କମଳ କୁମାର ଦାସ

ତୁମରି ହସରୁ କବିତା ଲେଖୁଚି
ମୋ ଲୁହକୁ କରି କାଳି
ତୁମ ପାଉଁଜି କୁ ଦେଖିବା ପାଇଁକି
ବସିଚି ଦିପାଳି ଜାଳି--୧

ଲାଗେ ମତେ ଏକା ଲୋକ ଗହଳିରେ
ମନ୍ଦିରେ ବସି ଆଜି
ମନେପଡେ ସବୁ ଗଲାଦିନକଥା
ଆଖି ଆଗେ ଯାଏ ଭାସି --୨

ଦିନଥିଲା ଆମେ ଦୀପ ଜାଳୁଥିଲେ
ଦୁହେଁ ତ ଦୁହିଁକ ପାଇଁ
ହେଲେ ଆଜି ସବୁ ବଦଳି ଯାଇଚି
ସେ କଥାରେ ଲାଭ ନାହିଁ--୩

ଆଉ କାହା ପାଇଁ ଦୀପଜାଳି ଯେବେ
ହେଉ ଥିବ ତୁମେ ଖୁସି




ମୋର ଦୀପ ଏଠି ନିତି ଜଳୁ ଥିବ
ତୁମରି ଶୁଭ ମନାସି--୪

ପ୍ରଭୁଂକ କୃପାରୁ ସର୍ବ ସୁଖ ଲଭି
ହେଉଥାଅ ତୁମେ ଖୁସି
ତୁମ ଚଲା ପଥ ମଧୁ ମୟ ହେଉ
କୁସୁମ ଯାଉ ବରଷି--୫

ସତରେ ନହେଲେ ସପନରେ ଆସି
ଥରେ ଯାଅ ଦେଖ ଦେଇ
ଆମ କାହାଣୀର ଶେଷ ଗୀତ ଟିକୁ
ଥରଟେ ଯାଅ ଶୁଣାଇ--୬

ମଳୟ ମହାନ୍ତି

ସ୍ମୃତିର ଧୂସର ସେଇ ବେଳାଭୂମିରୁ
ଯେତେବେଳେ ତୁମେ ଆସି ଯାଅ ମାନସୀ ଗୋ...
ବସନ୍ତର ମୃଦୁମଳୟର ତାଳେ ତାଳେ
ରଜନୀଗନ୍ଧାର ବାସ ନେଇ....

ଠିକ୍ ସେତେବେଳେ ମୁଁ ଜାଗିଉଠେ
ତୁମର ମଧୁର ସ୍ୱର୍ଶ ର ଶିହରଣରେ
ମାତ୍ର, ବାସ୍ତବ କୁ ମୁଁ ଯେବେ ଫେରିଆସେ
ଖୋଜିପାଏ ଅତୀତକୁ ମୋର...

ଯାହା ହଜି ଯାଇଥିଲା ସେଇ ସାଗରର ଢ଼େଉ ରେ
ବେଳାଭୂମିର ବାଲୁକା ଶଯ୍ୟାରେ... ॥ ।

ନିତ୍ୟଦର୍ଶନ ମିଶ୍ର

ପ୍ରଣୟର ଚାରୁକଳା
ମଧୁଚନ୍ଦ୍ରିକା ତୁମେ ବାସର ରାତିର...
ସପନ ଶେଯରେ ବସନ୍ତର ଛାନ୍ଦ
ଆଖିରେ ଯେ କେତେ ପହଲି ପ୍ରଣୟ ନିଶା
ମଧୁ ଚନ୍ଦ୍ରିକା ତୁମେ....

କେତେ ଗୋଲାପର ରଙ୍ଗକୁ ନେଇ ଗୋ
ସଜାଇଛ ତୁମ ଅଧର ପାଖୁଡ଼ା ଦୁଇ,
କେତେ ପ୍ରତିକ୍ଷାର ପରଦା ହଟାଇ
କହେ ଯେବେ କାନେ ମୁହିଁ ତୁମ ପ୍ରିୟ ସହି
ଫୁଲରେ ଫୁଲରେ ସଜଡ଼ା ଶେଯ ରେ...
ତୁମ ଗଭା ପରେ ଅଜଡ଼ା ଫୁଲର ଖୋସା...




ମଧୁ ଚନ୍ଦ୍ରିକା ତୁମେ ବାସର ରାତିର...

ଟିକି ଟିକି କେତେ ସାଇତି ରଖିଛି
ହୃଦୟରେ ମୋର ନୂଆ ପ୍ରଣୟର କଥା...
ଫୁଲର ଶେଯକୁ ଉଜାଡ଼ି ଦେଇ ଗୋ...
ଗାଇବି ତୁମ ରୁପସୀ ପ୍ରଣୟର ନୂଆ ଗାଥା
ବାସର ମନ୍ଦିରେ ମୁଖଶାଳା ପରେ....
ନଗ୍ନ ନୃତ୍ୟାଙ୍ଗନାର ଆଉ ଏକ ଶିଳା ଲେଖା...
ମଧୁ ଚନ୍ଦ୍ରିକା ତୁମେ ବାସର ରାତିର...
(ରୀତା ରଥ)

ସମାନ୍ତର

କଳା ଲାଲ ଭାର ନେଇ
ଦୁଇ କୂଳ ତାର ସମାନ୍ତର
ଅନଳ ରଙ୍ଗ ଦିଗନ୍ତେ
ଆକାଶ ଓ ରତ୍ନାକର ସମାନ୍ତର

ମୋ ଗାଁ କନିଆର ବାପଘର
ଆଉ ଶାଶୁଘର ସମାନ୍ତର
ଷୋଡ଼ଶୀ ପ୍ରିୟାର ଦୁଇଅ ହାତେ ଚୁଡ଼ି ସମାନ୍ତର
ବଡ ଦେଉଳରେ ଗମ୍ଭୀରା ଭିତରେ
କାଳିଆ ଓ ଗରୁଡ଼ ସ୍ତମ୍ଭେ ବିଜେ ସମାନ୍ତର

ଚକାଡ଼ୋଳିଆର ଦୁଇ ଆଖି
ପ୍ରସାରିତ ଦୁଇ ହସ୍ତ ସମାନ୍ତର
ମହାଶୂନ୍ୟେ ଗ୍ରହ ଓ ତାରକାର
ଚଲାପଥ ରହେ ସମାନ୍ତର

ସୂର୍ଯ୍ୟର ପ୍ରତିଟି ରଶ୍ମୀ
ଆକାଶରେ ଧାଏଁ ସମାନ୍ତର
ଜୀବନର କୁରୁକ୍ଷେତ୍ରେ
କୌରବ ପାଣ୍ଡବ ଯୁଦ୍ଧେ ସ୍ଥିତି ସମାନ୍ତର

ପରମାତ୍ମା ମିଳନକୁ ଇଚ୍ଛୁଥିବା
ଦୁଇଗୋଟି ଆତ୍ମାର ପ୍ରତିକ୍ଷା ହୁଏ ସମାନ୍ତର
ବଞ୍ଚିବା ମୋହ ନେଇ
ଏନ୍ତୁଡ଼ି ଓ ମଶାଣୀର ସ୍ଥିତି ସମାନ୍ତର




ପରବ୍ରହ୍ମ ଅନ୍ୱେଷଣେ
ଉପଭୋଗ ଆଉ ମୋକ୍ଷ ଉଭା ସମାନ୍ତର
ଜୀବନ ଓ ମୃତ୍ୟୁ ହିଁ ସମାନ୍ତର
ମିଳନ ଓ ବିଚ୍ଛେଦ ବି ସମାନ୍ତର
ଦିନ ଆଉ ରାତି ସମାନ୍ତର
ଆରମ୍ଭ ଓ ଶେଷ ମଧ୍ୟ ସମାନ୍ତର

ସୁବାସିନି ତ୍ରିପାଠି

ମୋ ପ୍ରାଣପ୍ରିୟା,

ହେ ମୋ ଜୀବନ ସଙ୍ଗିନୀ ମୋ ଅନୁଗାମିନୀ... !
ମାନିନୀ ମୋ ଅଭିମାନିନୀ ।
ଚପଳ ଛନ୍ଦା ମୋ ଅଳକାନନ୍ଦା
ମଧୁମାଳତୀ ମୋ ହେନା ସେବତୀ
ପ୍ରିୟତମା ମୋର ପ୍ରଣୟି ନାୟିକା
ଲାବଣ୍ୟବତୀ ମୋ ପୁନମୀ ରାତି
(ଏତିକି ହେବ...? ନା ଆଉ ଲେଖିବି...?)

ଯେବେ ତୁମେ ଆସିଥିଲ ରୁଣୁଝୁଣୁ ତୁମ ପାଉଁଜି ବାଜଇ
ହାତରେ ଶଂଖା ଓ ମଥାରେ ସିନ୍ଦୁର ନେଇ
ଭାବିଲି ମନେ ମୁଁ ସତେ କି ଚାନ୍ଦ ଧରଣୀକୁ ମୋର ଆସିଲା ଓହ୍ଲାଇ
ତୁମ ଆସ୍ତେ ଆସ୍ତେ ଚାଲି, ଧିର ଧିର କଥା
ମିଠା ମିଠା ପ୍ରୀତି... ଆହା ସେ ମଧୁର ପିରତୀ...!!
ମୋ ସାଥୀରେ ଖାଲି ମିଠା ଅଭିମାନ
ଆହ କି ମଧୁର ଥିଲା ତୁମ ବଚନ... !!
ଭାବିଲି ମନେ ମୁଁ ସତେ... କଥା ନୁହେ ଏଇଟା
ଅମୃତ ଝରଇ ତୁମ ଓଠରୁ କେତେ...?
ତେଣୁ ହେଲି ମୁଁ ଆନନ୍ଦେ ବିଭୋର
ମନେ ହେଉଥିଲା ଖୁସିରେ ଅଧିର ॥

ଦିନ କେଇଟାରେ ମୋ ସପନ ଭାଙ୍ଗିଲା
ସେ ରୁଣୁ ଝୁଣୁ ଚାଲୁ ଦୁମ୍ ଦୁମ୍ ଶୁଭିଲା
ସତେ ଅବା ଭୂମି କମ୍ପ କି ଆସିଲା... !!
ମୋ ଉପରେ ଖାଲି ଗର ଗର ହେଲ
ଯେତେ କଟୁ କଥା ମତେ ହିଁ କହିଲ
ମୋ ବାପା ମା'ଙ୍କୁ ଛାଡି ବି ନଥିଲ... ?




ହେଲେ, ମୁଁ ଆଜି ବି କହିବି
ତୁମେ ହିଁ ମୋର ପ୍ରାଣପ୍ରିୟା, ଜୀବନ ସଙ୍ଗିନୀ, ପ୍ରଣୟି ନାୟିକା
ନ କହିବି କେମିତି କୁହ ...?
ଦୁନିଆକୁ ମିଛ ମତେ ତ ସତ
ଘରକୁ ଆସିଲେ ଦ୍ୱାର ଖୋଲିବନି
ଖାଇବାକୁ ଗଣ୍ଡେ ଭାତ ବି ଦେବନି...???
...ଭଉଣୀ ମାଣେ ମୋ ଖରାପ ଭାବିବନି
ଏ ସବୁ ଖାଲି ଆମ ଗ୍ରୁପ୍ ରେ ଥିବା ଭାଇ ମାନଙ୍କ ପାଇଁ
ହା ହା ହା
ଅନୁଭବ ଟିକେ ଶେୟାର୍ କରିବେ ବୋଲି ଆସ

## ନିତ୍ୟଦର୍ଶନ ମିଶ୍ର

ହଁ ହଁ ମୁଁ ପ୍ରେମ କରିଛି
ହଁ ମୁଁ ପ୍ରେମ କରିଛି,
କାହାକୁ ମାରିନି ଆଖିର ଶରରେ
ଛାତିର ଶର ରେ ମାରିଛି
ହଁ ହଁ ପ୍ରେମ କରିଛି,
ପାର୍କରେ ବସି ଚୁମ୍ବନ ଦେଇନି
ଏକା ଏକା ତା'କୁ ଝୁରିଛି... !!!
ହଁ ହଁ ପ୍ରେମ କରିଛି ।

ତାଙ୍କୁ ଦେଇ ନିଜ ମନ ପୂଜାଥାଳି,
ନିନ୍ଦା ଅପବାଦ ସହିଛି,
ହଁ ହଁ ପ୍ରେମ କରିଛି...!!!
ସେ ସିନା ଭୁଲିଲେ ଜୀବନ ପଥରେ,
ଆଜି ବି ମନ୍ଦିରେ ତାଙ୍କ ପାଇଁ ଦୀପ ଜାଳୁଛି
ହଁ ହଁ ପ୍ରେମ କରିଛି...
ହଁ ମୁଁ ପ୍ରେମ କରିଛି...!!!

## ଊର୍ମିଳା ମିଶ୍ର

ଉପଯାଚିକା ଉଦାଚବଣ ମଲ୍ଲୀ ମୁଁ
ବନରେ ଫୁଟି ବନରେ
ଗଲି ମୁଁ... ଝଡ଼ି
ବ୍ୟର୍ଥ ଜୀବନ
ସାଥୀ ହୀନ ହୋଇ
ହା ହା କାର କଲି...




କାହାରି ଗଳାର
ହାର ହେବା ମୋ
ଭାଗ୍ୟରେ ନାହିଁ ଲେଖା
ସମାଜରେ ଆଜି ଉପାଧି
ମିଳିଛି ନା ମୋ
ଲକ୍ଷେ ଘର ଉଜାଡ଼ି
ମୁଁ... ସାଜିଛି ରାଣୀ
ମହୁମାଛି... ଲକ୍ଷେ
ଲୋକଙ୍କୁ ରୋଗ ବାଣ୍ଟି ମୁଁ
ନିଜକୁ ନିଜେ ଭୋଗୁଛି...
ହେ ଭଦ୍ର ସମାଜ
ଜାଗୃତ ହୁଅ ନକର
ରାସର ଲୀଳା... ଲାଗିଗଲେ ରୋଗ
ନଥିବ ଜୀବନ
କରିବାକୁ ଲୀଳା ହୁଅ ଅଜାଡିକା
ଜାଗୃତ ନକର ଭଦ୍ର ସମାଜ
ହେ ରୋଗ ଖେଳ ରାସର ଲୀଳା... ଲାଗିଗଲେ

ଉର୍ମିଳା ମିଶ୍ର

ନା ମୁଁ ପ୍ରେମ କରିନି
ପ୍ରେମର ଅନ୍ୟନାମ
ଯେବେ... ପ୍ରତାରଣା ହୁଏ
ତେବେ ମୁଁ ପ୍ରେମ କରିନି
କାହାକୁ ଦୁଃଖ ମୁଁ
ଦେଇନି... କିଏ ମୋ ପାଇଁ ପାଗଳ
ହୋଇ...ବିରହ ଯନ୍ତ୍ରଣା ସହିନି
ନା ମୁଁ ପ୍ରେମ କରିନି

ପ୍ରେମର ଅନ୍ୟନାମ
ଯେବେ... ସ୍ୱପ୍ନ ଚୋରି ହୁଏ
ତେବେ ମୁଁ ପ୍ରେମ କରିନି
କାହା ସ୍ୱପ୍ନ କୁ ଚୋରାଇ
ନେଇ... ତାକୁ ରାତି ଉଜାଗର କରିନି
ନା ମୁଁ ପ୍ରେମ କରିନି

ପ୍ରେମର ଅନ୍ୟନାମ




ଯେବେ... ଯନ୍ତ୍ରଣା ହୁଏ
ତେବେ ମୁଁ ପ୍ରେମ କରିନି
କାହାକୁ ଯନ୍ତ୍ରଣା ଦେଇନି
କିଏ ମୋ ପାଇଁ ଉତ୍ତପ୍ତ ଲୁହାକୁ
ନରମ ଓଠରେ ପେଇନି
ନା ମୁଁ ପ୍ରେମ କରିନି

## ଆଦିତ୍ୟ ସାହୁ

କଥାରେ କଥାରେ ଆମେ କବିତା ଲେଖିବା
କବିତା ଭିତରେ ଆମେ ଭାଷା ସଂଜତ କରିବା
ଭାଷା ଭିତରେ ଆମେ ଅର୍ଥ ଖୋଜିବା
ଅର୍ଥର ମାନେ ଏଠି ଆମେ ବାନ୍ଧିବା ଆଉ ସାଥିରେ
କଥା ଓ କବିତାକୁ ନେଇ ବଢ଼ିବା

## ଉଦୟନ ସୁପକାର

ବୋମା ବିସ୍ଫୋରଣର ଯେବେ ବ୍ୟାପୀ ଗଲା ଖବର,
ବଡ଼ ବଡ଼ ନେତା ସବୁ ଘରୁ ହେଲେ ବାହାର ॥
କିଏ କରେ ନିନ୍ଦା କିଏ ଦୁଃଖ କରେ ପ୍ରକାଶ,
ଟିଭି କ୍ୟାମେରା ଦେଖି କା'ର ଓଠେ ଖେଳେ ହସ ॥
ମରିଗଲେ ଯିଏ ସବୁ ତ ସାଧାରଣ ଜନତା,
ବୃଥା ଅଟେ କରିବା ଭାଇ ସେମାନଙ୍କ ଚିନ୍ତା ॥
ସୁରକ୍ଷା କର୍ମୀ ନେତାଙ୍କ ସାଥେ ଜାଗତିଆର,
ସାପ ଗଲା ଚାଲି ଏବେ ଚିହ୍ନ ପରେ ପାହାର ॥
ନିର୍ଲଜ ନେତାଙ୍କ ଯୋଗୁଁ ଦୁଃସହ ହେଲା ଜୀବନ,
ରକ୍ଷା ପାଇଗଲେ ଯିଏ ପାଇକରି ମରଣ ॥

ଏଇ କବିତାଟି ଦିଲ୍ଲୀରେ ସାଂପ୍ରତିକ ଘଟିଥିବା ବୋମା ବିସ୍ଫୋରଣ ସନ୍ଦର୍ଭରେ ରଚିତ

## ରଶ୍ମୀ ରଞ୍ଜନ ଦାଶ

କବି ଭାବନାରେ 'ମୁଁ' କାର ର ସୃଷ୍ଟି

ମାତା ଗର୍ଭେ ଥାଇ ଶିଶୁ ଟିଏ ଜାଣ ହୋଇକରି ଯୋଡ଼ହସ୍ତ
ବିକଳେ ବିନତି କରୁଥିଲୁ ପ୍ରଭୁଙ୍କୁ ଉଦ୍ଧାର ହେ ଜଗନ୍ନାଥ ॥
ପ୍ରଭୁ କରୁଣା ସାଗର ଯେଣୁ... ସହି ନପାରିଣ କଷଣ ଶିଶୁର ସଧିରେ ଭାଷିଲେ ତେଣୁ...
ଆହେ ମୋ ସୃଷ୍ଟି ର ସର୍ବ ଶ୍ରେଷ୍ଠ ଜୀବ ତୋତେ ମୁଁ ଉଦ୍ଧାରି ଦେବି...
ହେଲେ ତୋତେ ମୁହିଁ ଉଦ୍ଧାର କଲେ କି ଲାଭ ସତେ ପାଇବି...!!!




ଶିଶୁଟି କହଇ ଧିରେ.. ଯେତେ ଦିନ ଥିବି ଏ ଧରାରେ ମୁହିଁ ଭଜିବି ତୁମ୍ଭ ପୟର...
ହସିଲେ ଚକାନୟନ... ଏତେ଼ ବଡ଼ କାମ କରିପାରିବୁନି ଆରେ ମୋ ବାତୁଳା ଧନ,
ଶିଶୁଟି ଯେ ତହିଁ ପ୍ରକୃତିସ୍ଥ ହୋଇ ଭାଷିଲା ମଧୁର ଗୀତ
ପ୍ରତିଦିନ ମୁହିଁ ଥରୁଟେ ଡ଼ାକିବି ନିଷ୍କାମ ଭାବରେ ନାମକୁ ତୋର ॥
ପ୍ରଭୂହେଲେ ଛଳ ଛଳ.. ଯା'ରେ ତୋତେ ମୁଁ ଉଦ୍ଧାର କରିଲି ମାତୃଗର୍ଭୁ ତୋର...
ପ୍ରଭୂ ଆଦେଶ ପାଇଲା...
ଶିଶୁଟି ଜନମ ହେଲା...
ଭୂମିଷ୍ଠ ହେବାର ସଙ୍ଗେ ସଙ୍ଗେ ଶିଶୁ ପ୍ରଭୂ ନାମ ପାସୋରିଲା କୁଆଁ କୁଆଁ ରାବ ଦେଲା...
ଏକି ଅକଥା ହୋଇଲା ??? ଏ ଧରା ବୁକୁରେ ପାଦ ଦେଉ ଦେଉ ବିଭୁ ନାମ ଭୁଲି ଗଲା
ମଣିଷ ଅଭ୍ୟାସ ଏହି...
ସୁବିଧା ପାଇଲେ ବିପଦ ବନ୍ଧୁଙ୍କୁ ହେଲାରେ ପାଶୋରି ଯାଇ...
ଆଉ ଆମେ ମୂର୍ଖ ମଣିଷ ଜାତି ଶିଶୁର କୁଆଁରେ ବିକଳ ଆମର ଛାତି
ଭୁଲିଗଲୁ ଏହି ସତ କଥାଟି...
କୁଆଁ କୁଆଁ ନୁହେଁ 'କୋ-ଅହଂ' କହୁଛି ସେଇ ପିଲାଟି
ଛୁଟିକୁ ଖିଲାପ୍ କରି ମୁଁ କାରକୁ ଜନ୍ମ ଦେଇନ ଆଜିସେ ପ୍ରଭୁଙ୍କୁ ଗଲା ପାଶୋରି
କିସ ବା ହେବ ତାହାରି ଜାଣିଥିଲେ ଜାଣିଥିବେ ଏକା ଗୋଲକ ବିହାରୀ

ରୀତା ରଥ

ତୁମ ପାଇଁ

ଜୀବନର ସିଲଟରେ
ମନର ଚକ୍ ଖଡ଼ିରେ
ତୁମ ନାମ ବାରମ୍ବାର ଲେଖେ ଓ ଲିଭାଏ
ତୁମ ପାଇଁ ଦୁଇ ଧାଡ଼ି
କବିତା ଲେଖିବା ପାଇଁ
ପ୍ରେମର ନାଲିଆ ସ୍ୟାହି ଭରେ ଓ ନିଗାଡ଼େ

ତୁମ ପାଇଁ ସ୍ୱପ୍ନଟିଏ
ବୁଣିବାକୁ ମନ ହେଲେ
ଆଖିମୋର ଏଇ ଡୁବେ ଗଭୀର ନିଦରେ
ତୁମପାଇଁ ରାତିଟିଏ
ପାହିବାକୁ ମନ ହେଲେ
ଜୀବନ୍ତ ବିଜୁଳି ଚକ୍ର ଘୁରେ ଧମନୀରେ

ତୁମ ପାଇଁ ଲୁହଟିଏ
ଗଡ଼ିବାକୁ ଯାଉଥିଲେ




ସ୍ମିତହସଟିଏ ଏଇ ଓଠ ଛୁଇଁଯାଏ
ତୁମ ନେଇ କଷ୍ଟ ହେଲେ
ଆସେ ନାହିଁ ଏ ଓଠରେ
ତୁମରି ଗାୟତ୍ରୀ ମନ୍ତ୍ର ଆତ୍ମା ମୋର ଗାଏ

ତୁମ ପାଇଁ ପୂଜାଟିଏ
ରଖିବାକୁ ଯାଇ ସତେ
ଆରତୀ ଥାଳି ମୋ ସାଜେ ବାରମ୍ବାରେ
ତୁମପାଇଁ ଦୀପଟିଏ
ଜାଳିବାକୁ ମନ୍ଦିରରେ
ଏଇ ମନ ସଳିତାରେ ହୁଏ ବାରମ୍ବାର
ଏଇ ମନ ସଳିତାରେ ହୁଏ ବାରମ୍ବାର....

## ବିଭୁତି ରଥ

ଗୋଟେ କବିତା

ହଁ ମୋର ବି ଜଣେ ପ୍ରେମିକା ଥିଲା
ମୁଁ ବି ପ୍ରେମ କରିଛି, ରାତିରେ ଶୋଇ
କେତେ ସ୍ୱପ୍ନ ଦେଖିଛି, ମାଲୁଣି ର
ଘରେ ବନ୍ଧା ରାଜ କୁମାରୀ, ରାଜା ପୁଅ
ସାଜି ଘୋଡ଼ା ଚଢ଼ିଛି ॥

ସତ କହୁଛି ପ୍ରେମର ବନ୍ୟା ମୁଁ
ଦେଖିଛି, ତା'ର ଶୀତ ରେ ମୋ ଦେହ
ଶୀତେଇ ଯାଇଛି, ବସନ୍ତରେ କୃଷ୍ଣଚୁଡ଼ା
ଫୁଲ ଆଉ ସୁଲୁସୁଲିଆ ପବନରେ
କେତେ ଯେ ମୁଁ ନାଚିଛି,
ପ୍ରେମିକାର ସାଥେ ବୁଲି ବୁଲି
ପ୍ରଜାପତି ଧରିବାକୁ ଧାଇଁଛି
ସମୁଦ୍ର କୂଳରେ କଙ୍କଡ଼ା
ଖୋଳ ପଡ଼ିଆରେ କଙ୍କି ଙ୍କୁ ମୁଁ
ନିଜର ଭାବିଛି...
ହଁ ତ ସବୁ ନିଜର, ମୋର
ଏହି ଭାବ ହିଁ ଦେଖିଛି ॥

ମୁଁ ଜାଣିଛି, ପ୍ରେମର ସୁନାମି




ଦେଖିଛି, କେତେ ଭୟଙ୍କର
ତାର ଦାବାନଳ, ସୁଦୂର ପ୍ରସାରୀ
ତା ଅନୁଭବ, ହଁ ହଁ ମୁଁ ସବୁ ବୁଝିଛି ॥

ସୁନାମୀ ପରେ କଙ୍କି ଙ୍କୁ ଡ଼ାକିଛି
କଙ୍କଡ଼ାଙ୍କୁ କହିଛି, ପ୍ରଜାପତି କୁ
ହାତ ଠାରି କେତେ ନେହୁରା ହୋଇଚି
ଆସ ମୋ ସଙ୍ଗେ ଟିକେ କଥା ହୁଅ
ନିଜର କହି ଆଖିରୁ ଲୁହ ଟୋପେ
ପୋଛିଦିଅ କହିଛି, କୃଷ୍ଣ ଚୁଡ଼ା
ଫୁଲ ତ ମତେ ଦେଖି ତା ରଙ୍ଗ ବି
ବଦଳେଇ ଦେଇଚି, ବସନ୍ତ ଆଉ ଶୀତ
ସେଦିନ ଠୁ ମୋ ଘରକୁ କି
ମୋ ପାଖକୁ ଆସି ନାହାନ୍ତି...

ପ୍ରେମ ସୁନାମୀରେ ସର୍ବହରା
ମୁଁ ରୂପୀ ମଣିଷମାନେ, ଏବେ
ଭୟରେ, ବଡ଼ ବଡ଼ ଆଖି କରି
ଚାହୁଁଛନ୍ତି ପ୍ରେମ କଥା ଶୁଣିଲେ....

ଉଦୟନ ସୂପକାର

ସାହେବ କହିଲେ ଦିନେ କିରାଣୀକୁ ରାଗି କରି
ଭୟ ମୋ ପ୍ରତି ନାହିଁ ତୁମର ହେଲା ଏହା କିପରି ?
କହିଲା କିରାଣୀ ବିନୟରେ ଯେ ହାତ ଯୋଡ଼ିକରି
ବିବାହିତ ପୁରୁଷ ମୁଁ ଦୀର୍ଘ କାଳ ଧରି
ବଚନ ଦେଇଛି ପତ୍ନୀକୁ ହାତ ଧରି କରି
ତାଙ୍କ ଛଡ଼ା କାହାକୁ ମୁଁ ପାରିବିନି ଡ଼ରି

ରଞ୍ଜନ କୁମାର ପାଣିଗ୍ରାହୀ

ବରଷା ଜୀବନ

କୁନି ବରଷା ଜୁଲାଇ ମାସରେ
ଅସରାଏ ଢ଼ାଳିଦେଇ ଛାଡ଼ିଯାଏ
ଯୁବ ବରଷା ଅଗଷ୍ଟ ମାସରେ
ନିର୍ଘାତ ବରଷେ କିଛି ବେଳ ଛାଡ଼ିଯାଏ




ବୁଢ଼ା ବରଷା ସେପ୍ଟେମ୍ବର ମାସରେ
କଳା ହାଣ୍ଡିଆ ମେଘ ସହ ଆସେ
ମୁଷଳ ଧାରାରୁ ଆରମ୍ଭ
ନିର୍ଘାତ ବାଘୁଆ ଟୋପା
କେବେ ଜୋର୍ ଜୋର୍ କେବେ ଝିପ୍ ଝିପ୍
ବୁଢ଼ା ମେଘ ବର୍ଷୁଥାଏ...
ଅଭିଗଣ୍ୟତାରେ ନୟନ୍ତା କରେ
ଛାଡ଼ିବାର ନାଁ ଧରେନି ମନ ହେଲେ
ଟିକେ ଥମି ଯାଏ, କିନ୍ତୁ ବର୍ଷୁଥାଏ
ଏଠି, ସେଠି ଛାଡ଼ିଗଲେ ଆଉ କୋଉଠି...

## ରୀତା ରଥ

ବାସି ବନଫୁଲ ନେଇ, କେମିତି ପୂଜିବି ମୁହିଁ
ପ୍ରଣୟ ଜଞ୍ଜ ଅଗ୍ନିରେ ଜୀବନ ତ ଧରେ ଧୂଆଁ
ସେ ଧୂଆଁ ମହକ ଖେଳେ ପୃଥିବିର ଦିଗବିଦିଗେ,
କୁହ ହେ ପ୍ରାଣର ସାଥି ପାରିବକି ସହି ?
ତୁମ ପାଇଁ ଦେବଦାସୀ ସାଜିବାର ଧୈର୍ଯ୍ୟନାହିଁ,
ଉଥଳ ଯମୁନା କିବା ପାରିବ ଶୁଖାଇ ?
ତୁମ ପାଇଁ ମାଣିକ ଯେ ସାଜିବାର ଦମ୍ଭ ନାହିଁ
ତୁମ ମନ ଶୋଷ ସତେ ପାରିବି ମେଣ୍ଟାଇ ?
ତଥାପି କାହିଁକି ଆଜି ତୋଳେ ବାସି ଫୁଲ ମୁହିଁ,
ଭିଜାଏ ନିଜକୁ ଆଜି ତୁମ ପ୍ରୀତି କାକର ବିନ୍ଦୁରେ
ସତେକି ସତେଜ ହେବ, ପବନରେ ଝୁଲୁଥିବ
ଛୋଟ ପ୍ରଶ୍ନଟିଏ ଆଜି ଆସଇ ମନରେ...

## ନିତ୍ୟଦର୍ଶନ ମିଶ୍ର

ତୁମେ ସାଥି କାଳେ ସେଇ ସ୍ନିଗ୍ଧ କବି, ଲେଖି ପାରେ ଯିଏ ଜୀବନର ଛବି ମନର ରଙ୍ଗ ଦେଇ
ତୁମେ କାଳେ ସାଥି ସେଇ ଚିତ୍ରକର, ଆଙ୍କଇ ଯେ ଶୂନ୍ୟ, ପୃଥ୍ୱିର ଆକାର... ଭାଷା ମିଳେନି ଗୋ କହି
ତୁମେ କାଳେ ସାଥି ପ୍ରେମ ରାଇଜର ରାଣୀ... ବିଶ୍ୱ ରଖିଛ ନିଜ ସ୍ନେହରେ ଟାଣି
ତୁମେ କାଳେ ସାଥି, ପାହାନ୍ତି ସ୍ୱପ୍ନ ଥରାଇ ଦିଅଯେ ଏଯିବ ପରାଣ.. ଦେଲେ ଥରେ ମନେ ଛୁଇଁ
ତୁମଏ ଆଜି ମୋର ସେ ନବ ଦିଗନ୍ତ, ପ୍ରତୀକ୍ଷା ସତେକି ହୋଇବ ମୋ ଅନ୍ତ... ହେଲି ତୁମ ପାଶେ ଋଣୀ
ତୁମେ କାଳେ ସାଥୀ... ସେଇ ସହଯାତ୍ରୀ, ଯାହାର ସପନ ଦେଖେ କେତେ ରାତ୍ରୀ... ଉଭାନ ହୁଅ ଯେ ସପନ ପତରୁ ଆଖି ଖୋଲି ଦେଲେ ଚାହିଁ




## ରଶ୍ମି ରଞ୍ଜନ ଦାଶ

ଭାଲୁଣୀ ପରି ମୁହଁ ଟି ତାହାର... ହାତୀ ପରି ଅଟେ ଦେହ
ସପ୍ତ କୋଟି ପର୍ବତରୁ ପୁଣି ଭାରି... ସବୁଠାରେ ତା'ର ଥୟ...
ଯିଏ ତା'କୁ ଡାକେ ତାକୁ ସେ କନ୍ଦାଏ... ହସୁ ଥାଏ ସବୁବେଳେ
କିଏବା ଏମିତି ରହିଛି କେଉଁଠି ଖୁଶି ହୁଏ ଗାଳି ଦେଲେ
ଛୋଟ ବେଳୁ ମୁହିଁ ଅଜ୍ଞାନ ବଶରେ ତାହା ପ୍ରେମେ ଗଲି ପଡ଼ି
ପାରୁନି ତାହାକୁ ଛାଡ଼ି...
ଉଠିବା, ବଞ୍ଚିବା ଚେଇଁବା ଶୋଇବା ସବୁ ହୁଏ ତା ନାମକୁ ଧରି
କର ବୁଦ୍ଧି ଅଛି କହିବା ସେ କିଏ କେଉଁ ଦେଶେ ତା'ର ଘର...
ଉତ୍ତର କହିଲେ ତା ପ୍ରେମେ ପଡ଼ିବ ତେଣୁ କୁହ ହେ କରି ବିଚାର

## ସୁବାସିନୀ ତ୍ରିପାଠୀ

ଆମ 'ବାପୁ' ମନ ଆଜି ବିକଳେ କାନ୍ଦୁଛି
ଆଜି ଏ ଦେଶର ଅବସ୍ଥା ପାଇଁ
ଏହି ଦିନ ସବୁ ଦେଖିବା ପାଇଁ କି
ଆମ ଦେଶ ସ୍ୱାଧୀନ ଥିଲା କି ହୋଇ ???

କୁହ କୁହ ମୋର ଭଉଣୀ ଭାଇ
ଏଇ ପରିସ୍ଥିତି ପାଇଁ କିଏ ହୋଇବ ଗୋ ଦାୟୀ ???

ବାପୁ ଫେରିବେନି ଆଉ ଏ ଦେଶକୁ
ଆମ ସାଥେ ଲଢ଼େଇ କରିବା ପାଇଁ
ଆମ ପାଇଁ ଆମେ ନିଜେ ହିଁ ଲଢ଼ିବା
ଏକଜୁଟ ଆଜି ହୋଇ...

ଆଗରେ ଅଛନ୍ତି 'ଆନ୍ନା' ଜୀ ଆମର
ଚାଲ ପଛେ ଯିବା ଛିଡ଼ା ହୋଇ
ଦେଖିବା କେମିତି ନ୍ୟାୟ ମିଳିବନି
ଆମେ ସତ୍‌ପଥରେ ଥିଲେ ରହି
ହଁ ସତ୍‌ପଥରେ ଥିଲେ ରହି

ହାତରେ ହାତ ମିଶାଅ... ଆସ ସାଥିରେ ଲଢିବା ଆସ...

# ପାଠକୀୟ ମତାମତ

ଆହ୍ୱାନ ଇ-ପତ୍ରିକାର ଲୋକପ୍ରିୟତାରେ ଯେଉଁମାନଙ୍କ ସହଭାଗିତା ରହିଛି, ସେମାନଙ୍କୁ ହୃଦୟରୁ ଧନ୍ୟବାଦ ଦେଉଛି । ବିଗତ ସଂସ୍କରଣ ପରେ ଅନେକ ବନ୍ଧୁମାନେ ନିଜ ନିଜ ମତାମତ ଆମ ନିକଟକୁ ପଠାଇଛନ୍ତି, ସେହି ସବୁ ମତାମତ ଭିତରୁ ମାତ୍ର କେତୋଟି ମତାମତକୁ ଆମେ ଏଠାରେ ଦେଉଛୁ । ଆପଣଙ୍କ ମତାମତ ଆମକୁ ଏହି ଇ-ପତ୍ରିକାକୁ ଆହୁରି ଅଧିକ ଉନ୍ନତତର କରିବା ସହିତ ଓଡ଼ିଆ ଭାଷା ଆନ୍ଦୋଳନରେ ସହାୟକ ହେବ ବୋଲି ଆମେ ଦୃଢ଼ ଆଶା ପୋଷଣ କରୁଛୁ । ଆପଣଙ୍କ ମତାମତକୁ ଆମେ ଅପେକ୍ଷା କରିଛୁ । କେଇଜଣ ବନ୍ଧୁ ଆମକୁ ଅଣ-ପ୍ରକାଶନ ଯୋଗ୍ୟ ମତାମତ ବି ଦେଇଛନ୍ତି, ଭଗବାନ ସେମାନଙ୍କୁ ସଦ୍‌ବୁଦ୍ଧି ଦିଅନ୍ତୁ ବୋଲି ଆମେ ପ୍ରାର୍ଥନା କରୁଛୁ ।

ଆପଣଙ୍କ ମତାମତ ଆପଣ ଆମ ନିକଟକୁ ଇ-ମେଲ୍ ଦ୍ୱାରା ପଠାଇପାରିବେ । ଆମ ଇ-ମେଲ୍ ଠିକଣା ହେଉଛି aahwaan@gmail.com କିମ୍ବା ଆମ ଫେସ୍‌ବୁକ୍ ସଦସ୍ୟ ପୃଷ୍ଠାରେ ଆପଣ ନିଜସ୍ୱ ମତାମତ ଦେଇ ପାରିବେ । ଆମ ଫେସ୍‌ବୁକ୍ ସଦସ୍ୟ ପୃଷ୍ଠାର ଠିକଣା ହେଉଛି http://www.facebook.com/jyoti.pattnaik ଧନ୍ୟବାଦ ।

ବସନ୍ତ ମହାନ୍ତି -

ଭାରୀ ଭଲ ଲାଗେ ଆପଣଙ୍କ ଆହ୍ୱାନ ଓ ସବୁଠୁ ଭଲ ଆପଣ, ଆପଣଙ୍କୁ ଯିଏ ସାମାନ୍ୟ ଭାବିବ ସେ ଅତି ମୂର୍ଖ

————( ୦ ୦ )————

ସୁବାସିନୀ ତ୍ରିପାଠୀ

ଆହ୍ୱାନ ହେଉ ଆପଣଙ୍କର ମହାନ

ସଭିଙ୍କୁ ମୋର ଏତିକି ଖାଲି ନିବେଦନ

ସମୃଦ୍ଧି ପଥରେ ସେ ଯାଉ ଆଗେଇ

ସଭିଙ୍କର ଶୁଭକାମନା ନେଇ

————( ୦ ୦ )————

ସରୋଜ ସାହୁ

ବହୁତ ପ୍ରଶଂସନୀୟ ପଦକ୍ଷେପ, ଲାଗୁଛି ଯେମିତି ଏହା ବଢୁଛି । ସାହିତ୍ୟ ଓ ସଂସ୍କୃତିକୁ ଏପରି ଗୋଟାଏ ବାହାନ ର ଆବଶ୍ୟକତା ଥିଲା । ଏ ଥରକ ଏହା ଦେଖିବାକୁ ବହୁତ ବଢ଼ିଆ ହୋଇଛି, ଜାରୀ ରହୁ ଜୟ ଯାତ୍ରା ।

ଶ୍ରାବଣୀ ପଟ୍ଟନାୟକ

ଜମିଗଲା । ହା ହା ହା ।

————( ୦ ୦ )————

ଗୁରୁଦତ୍ତ ସାମନ୍ତସିଂହାର

ବାଃ, ଆପଣଙ୍କ ନିମନ୍ତ୍ରଣପାଇ ମୁଁ ଆନନ୍ଦିତ, ସ୍ୱାଗତଂ

————( ୦ ୦ )————

ଲକ୍ଷ୍ମୀକାନ୍ତ ପାଢ଼ୀ

ବହୁତ ଭଲ ଇ-ପତ୍ରିକା । ଭଗବାନ ଆପଣଙ୍କୁ ଆଶୀର୍ବାଦ କରନ୍ତୁ ।

————( ୦ ୦ )————

ବିଷ୍ଣୁ ପ୍ରସାଦ ଚୌଧୁରୀ

ଆହ୍ୱାନ....ସତରେ ଏକ ଆହ୍ୱାନ ଆଜିର ଏ ନୁଆ ଯୁବପିଢି ପାଇଁ ହଜି ଯାଉଥିବା ସଂସ୍କୃତି ଏବଂ ଲୁଚିଯାଉଥିବା ପ୍ରତିଭା କୁ ବଞ୍ଚେଇବା କୁ.. ଆପଣ ଙ୍କୁ ବହୁତ୍ ବହୁତ୍ ଧନ୍ୟବାଦ ଜ୍ୟୋତି ଭାଇ...ଆପଣଙ୍କ ପ୍ରୟାସ ସତରେ ବହୁତ୍ ମୂଲ୍ୟବାନ

————( ୦ ୦ )————

ପ୍ରଶାନ୍ତ ନାୟକ

ମତେ ଭାରି ଭଲ ଲାଗିଲା, ଧନ୍ୟବାଦ

————( ୦ ୦ )————

ଶ୍ରାବଣ ସାମଲ

ବହୁତ ଭଲ ।

————( ୦ ୦ )————

ଲମ୍ବୋଦର ପ୍ରସାଦ ଦାସ

ପରିବର୍ତ୍ତନ ପାଇଁ ଏକ ଅତ୍ୟାବଶ୍ୟକ ଆମନ୍ତ୍ରଣ

————( ୦ ୦ )————

ଚିନ୍ମୟ ଦଳେଇ

ବହୁତ ବଢିଆ

————( ୦ ୦ )————

ଧୀରେନ୍ କୁମାର ସାହୁ

ଚମତ୍କାର

————( ୦ ୦ )————

ଅନୁପାଞ୍ଜଳୀ ମହାନ୍ତି

ବହୁତ ବହୁତ ଧନ୍ୟବାଦ

----(୦୦)----

ପ୍ରକାଶ ମହାନ୍ତି

ଏହା ଅତ୍ୟନ୍ତ ସୁନ୍ଦର ହୋଇଛି ।

----(୦୦)----

ଉଦୟନ ସୂପକାର

ପ୍ରଚ୍ଛଦ ପଟର ଛବି ବହୁତ୍ ଆକର୍ଷକ ହୋଇଛି । ଅଭିନନ୍ଦନ ।

----(୦୦)----

ଶ୍ୟାମ ଦାସ

ଖୁବ୍ ଖୁବ୍, ବହୁତ୍ ବହୁତ୍ ବହୁତ୍ ସୁନ୍ଦର, ବହୁତ୍ ବହୁତ୍ ଗର୍ବ ଲାଗିଲା, ବହୁତ୍ ବହୁତ୍ ଭଲ ଲାଗିଲା, କହିବାକୁ ଭାଷା ନାହିଁ । ଆପଣଙ୍କ ପ୍ରଚେଷ୍ଟାକୁ ମୋର ଟୋପି ଖୋଲିକି ସାଲ୍ୟୁଟ୍ ଜଣାଉଛି ।

----(୦୦)----

ରୀତା ରଥ

ବାଃ, ବହୁତ ବଢିଆ । ମୋର ଆନନ୍ଦ ପ୍ରକାଶ କରିବାକୁ ଶବ୍ଦର ଅଭାବ ।

----(୦୦)----

ସୁଦତ୍ତା ବିଶ୍ୱାଳ

ବାଃ, ବହୁତ୍ ବଢିଆ ।

----(୦୦)----

ଚନ୍ଦ୍ର ଶେଖର ବିଶ୍ୱାଳ

ପ୍ରଚ୍ଛଦ ବହୁତ୍ ବଢିଆ ହେଇଚି, ଆଉ ପତ୍ରିକା ଅବର୍ଣ୍ଣନୀୟ ।

----(୦୦)----

ଗୋଲାପ ମଞ୍ଜରୀ ପଣ୍ଡା

ଧନ୍ୟବାଦ । ଆପଣଙ୍କ ପ୍ରଚେଷ୍ଟା ଓଡ଼ିଆ ଭାଷାର ଉତ୍‌ଥାନ ପାଇଁ ବହୁତ ସାହାଯ୍ୟ କରିବ ।

----(୦୦)----

### ସରୋଜ ମିଶ୍ର

ସମସ୍ତେ ମୋ ପରି ବାଲି ଝାଡ଼ିବାରେ ସାହାଯ୍ୟ କରନ୍ତୁ, ଆହ୍ୱାନ ଦୀର୍ଘାୟୁ ହେଉ । ଆହ୍ୱାନ ସେତୁବନ୍ଧରେ ମୁଁ ଗୁଣ୍ଡୁଚି ମୂଷା ହୋଇପାରେ କି ?

————( ୦ ୦ )————

### ରଶ୍ମୀ ରଞ୍ଜନ ଦାଶ

ଜୟ ଜଗନ୍ନାଥ । ଆହ୍ୱାନର ଅଗଷ୍ଟ ସଂଖ୍ୟାଟି ଖୁବ୍ ହୃଦୟସ୍ପର୍ଶୀ ହୋଇଛି... । କିନ୍ତୁ ପରିତାପର ବିଷୟ ଯେ ମୁଁ ଏହି ସଂଖ୍ୟାରେ ସାମିଲ୍ ହୋଇ ପାରିଲି ନାହିଁ । ପରୀକ୍ଷା ତଥା ଅନ୍ୟ କିଛି ଅସୁବିଧା ହେତୁ କବିତାଟିଏ ଲେଖିଥିଲେ ସୁଦ୍ଧା ଆପଣଙ୍କୁ ଦେଇ ପାରିଲି ନାହିଁ । ତେଣୁ ମୁଁ ଅତ୍ୟନ୍ତ ଦୁଃଖିତ । ଆଶା କରୁଛି ପରବର୍ତ୍ତୀ ସଂଖ୍ୟାରେ ମୋ ଲେଖାଟିକୁ ସ୍ଥାନ ଦେବାର କଷ୍ଟ କରିବେ ।

————( ୦ ୦ )————

### ଶ୍ରାବଣୀ ପଟ୍ଟନାୟକ

ଫେସ୍‌ବୁକ୍ ସାହିତ୍ୟ ଫର୍ଦରେ ଆହ୍ୱାନ ଗୋଟିଏ ନବ ଦିଗନ୍ତ !

ଓଡ଼ିଆ ପ୍ରେମୀ ସୁଧୀ ସାହିତ୍ୟିକ ବନ୍ଧୁଗଳ ଜୀବନବ୍ୟାପୀ ଓଡ଼ିଆଭାଷା ଓ ସାହିତ୍ୟ ସାଧନା ରେ ନିଜକୁ ସମର୍ପି ସାରସ୍ୱତ ର ସ୍ରୋତସ୍ୱିନୀ ସୃଷ୍ଟି କରି ଚାଲିଛନ୍ତି, ତା'ର ସୁନ୍ଦର ପ୍ରତିଫଳନ... ଆମେ ଏଠି ଆହ୍ୱାନରେ ଦେଖି ଖୁସିରେ ବିଭୋର ହୋଇ ପଡୁଛୁ ।

ଆହ୍ୱାନର ପ୍ରତିଷ୍ଠାତା ସମ୍ପାଦକ ଜ୍ୟୋତି ପ୍ରସାଦ ପଟ୍ଟନାୟକଙ୍କ ସୃଜନପ୍ରେମ ହିଁ ଆମକୁ ସୁଯୋଗ ଦେଇଛି ଏହି ସାବଲୀଳ ଓଡିଆ ପତ୍ରିକା ହାତ ପାଆନ୍ତାରେ ପଢିବା ପାଇଁ । ପେଶାରେ ଜଣେ ଡ଼ାକ୍ତର, ନିଶା କିନ୍ତୁ ସାହିତ୍ୟ ଚର୍ଚ୍ଚା, ସାରା ଜୀବନରେ ଦୁଇଟି ବ୍ରତ ତାଙ୍କର, ସାହିତ୍ୟ ଓ ମାନବସେବା । କେତେ ଉଚ୍ଚ ଆଦର୍ଶ, ମହନୀୟ ଜୀବନ ଧର୍ମ, ଜୀବନର ସଂଜ୍ଞା ଖୋଜୁ ଖୋଜୁ ପହଞ୍ଚିଯାଏ ମୁଁ ଏଠି, ମଥିତ ହୁଏ ମୋ ମାନସ ଭୂମି, ସାରସ୍ୱତର ପୁଲକ ଛୁଇଁ ଯାଏ ମୋ ଚେତନା ଆକାଶକୁ, ଜଣେ ବିଦଗ୍ଧ ପାଠିକା ଭାବେ ମୋ ସନ୍ତାପିତ ପ୍ରାଣକୁ ମିଳେ ଅଫୁରନ୍ତ ଆସ୍ୱସ୍ତି ର ଆନନ୍ଦ ।

ଜ୍ୟୋତି ଭାଇ ! ତୁମକୁ ବୋନିର ସଶ୍ରଦ୍ଧ ବିନମ୍ର ପ୍ରଣାମ !

————( ୦ ୦ )————

### କୈଳାଶ ଚନ୍ଦ୍ର ଗୁରୁ

ଜ୍ୟୋତି ବାବୁ ଆହ୍ୱାନ ପଢ଼ିଲି । ଆଉଥରେ ଅଶେଷ ଅଶେଷ ଧନ୍ୟବାଦ ଦେଉଛି ଆପଣଙ୍କ ଉଦ୍ୟମକୁ । ଆପଣ ନିଜ ସଂପାଦକୀୟରେ ମୋ ମନ କଥା କହିଛନ୍ତି । ଭଗବାନ ଶ୍ରୀ ଜଗନ୍ନାଥଙ୍କ ପାଖରେ କୌଣସି ଧାର୍ମିକ ଭେଦଭାବ କରିବା ଅନୁଚିତ । ନିକଟ ଅତୀତରେ ଜଗଦିଶ୍ ଟାଇଟ୍‌ଲର ଆସିଥିବା ସମୟରେ ଏହି କଥା ଉଠିଥିଲା । ମୁଁ ଆପଣଙ୍କ ମତ ସହ ସହମତ । ଭଗବାନ ଆପଣଙ୍କୁ ଦୀର୍ଘାୟୁ କରନ୍ତୁ ।

# ପାଠକ ମାନଙ୍କ ନିମନ୍ତେ ପ୍ରଶ୍ନ

ବିଗତ ମାସରେ ପାଠକୀୟ ମତାମତ ପାଇଁ ଆମେ ପଚାରିଥିଲୁ ଏକ ସମ୍ବେଦନଶୀଳ ପ୍ରଶ୍ନ । "ଶ୍ରୀ ଜଗନ୍ନାଥ ମନ୍ଦିରରେ ଅଣ-ହିନ୍ଦୁଙ୍କ ପ୍ରବେଶ କଟକଣା ରହିବା ଉଚିତ କି ?" ଏହାର ଉତ୍ତରରେ ଆମେ ପାଇଥିଲୁ ଅନେକ ପ୍ରକାରର ମତାମତ, ଦୃଢ଼ ମତବାଦ ଠାରୁ ଆରମ୍ଭ କରି ନରମ ମତ ପୋଷଣ କରୁଥିବା ବିଭିନ୍ନ ମତ ଆମ ହସ୍ତଗତ ହୋଇଛି । ଏହାର ଫଳାଫଳ କ'ଣ ତାହା କହିବା ବର୍ତ୍ତମାନ ତ ସମ୍ଭବ ନୁହେଁ କାରଣ ମୁଷ୍ଟିମେୟ ବ୍ୟକ୍ତିଙ୍କ ମତାମତ ଆମ ସମାଜରେ କୌଣସି ମୂଲ୍ୟ ରଖେ ନାହିଁ । ତଥାପି ବହୁତ ବନ୍ଧୁ ଏହି ମତର ବିପରୀତ ମନ୍ତବ୍ୟ ଦେଇଛନ୍ତି । ଅଧିକାଂଶ ଲୋକ କହିଛନ୍ତି ଯେ ଶ୍ରୀମନ୍ଦିରର ଦ୍ୱାର ଅଣ-ହିନ୍ଦୁ ଓ ହିନ୍ଦୁ ଉଭୟଙ୍କ ପାଇଁ ଉନ୍ମୁକ୍ତ ହେବା ଉଚିତ ।

ଚଳିତ ମାସରେ ଆମର ପାଠକ ମାନଙ୍କ ପାଇଁ ଆମେ ଦେଉଛୁ ଆଉ ଏକ ପ୍ରଶ୍ନ । "ଭାରତ ଭୂମିରେ ଆସି ଆତଙ୍କଲୀଳା କରୁଥିବା ଆତଙ୍କବାଦୀମାନଙ୍କୁ ରାଷ୍ଟ୍ରୀୟ ସୁରକ୍ଷା ଦେଇ ବଞ୍ଚାଇ ରଖିବା କେତେଦୂର ଯୁକ୍ତିଯୁକ୍ତ ?" ଏହି ବିଷୟ ଉପରେ ଆପଣ ମାନଙ୍କ ମତାମତ ଆମ ପାଖକୁ ଇ-ମେଲ୍ ଦ୍ୱାରା ପଠାଇ ପାରିବେ କିମ୍ବା ଫେସ୍‌ବୁକ୍‌ର ଆମ ସଦସ୍ୟ ପୃଷ୍ଠାରେ ଦେଇ ପାରିବେ ।

ରିପୁଦମନ ସୌରଭ ମିଶ୍ର

ନା, କଦାପି ନୁହେଁ । ଏଥି ପାଇଁ ମୁଁ ଓଡ଼ିଆ ଭାବେ ଦୁଃଖିତ ଅନୁଭବ କରେ ।

-----(୦୦)-----

ଚିଦାମ୍ବରିଶ ଶିବୁ

ହଁ । ରହିବା ଉଚିତ ।

-----(୦୦)-----

ଆଭାସ କୁମାର ବରାଳ

ମନ୍ଦିର କଣ କାହାର ପୈତୃକ ସଂପତ୍ତି କି ??

-----(୦୦)-----

ବସନ୍ତ ମହାନ୍ତି

ଯଦି ଆଗରୁ ନିୟମ ଅଛି ଓଡ଼ିଶାରେ ତେବେ ରହିବା ହିଁ ଭଲ ହେବ, ଯଦି କିଛି ପରିବର୍ତ୍ତନ ପାଇଁ ତେବେ ପରବର୍ତ୍ତୀ ସମୟ ରେ ଓଡ଼ିଶା ରେ ହିଁ ସମସ୍ୟା ଭୟଙ୍କର ପୁରା ଗ୍ରହଣ କରିବ । ପୁରୀ ଶ୍ରୀମନ୍ଦିରରେ ଅଣହିନ୍ଦୁଙ୍କ ପ୍ରବେଶ ନିଷେଧ ରହିବା ନିହାତି ଆବଶ୍ୟକ । କାରଣ ଆମ ଓଡ଼ିଶା ରେ ଆଗରୁ ଏହି ପରଂପରା ଚାଲି ଆସୁଛି । ଅଣ ହିନ୍ଦୁ ମାନଙ୍କ ପ୍ରବେଶ ନିଷେଧ ଯଦି ଏଥିରେ କିଛି ପରିବର୍ତ୍ତନ ଆସେ ତେବେ ପରବର୍ତ୍ତୀ ସମୟରେ ଓଡ଼ିଶା ପାଇଁ ବିପଦ ସୃଷ୍ଟି ହୋଇପାରେ । କାରଣ ବିଦେଶୀଙ୍କୁ ବିଶ୍ୱାସ କରି ଆମ ଦେଶ ୨୦୦ ବର୍ଷ ପରାଧିନ ହୋଇଛି । ଆଉ ବିଦେଶ କୁ କିମ୍ବା ବିଦେଶୀ ପର୍ଯ୍ୟାଟକ ମାନଙ୍କୁ ବିଶ୍ୱାସ କରିବା ଠିକ ହେବନି, ଯଦି ଆଜି ସେମାନଙ୍କୁ ପୁଣି ଆଶ୍ରୟ ଟିକେ ଦେବା ତେବେ ପୁଣି ଆମ ଦେଶରେ ଗାନ୍ଧୀ, ଭଗତ ସିଂ ମାନଙ୍କୁ ଜନ୍ମ ନେବାକୁ ପଡ଼ିବ । ଯାହା ଆଉ ଅସମ୍ଭବ । ତେଣୁ ମୋର ମତ, ଅଣ ହିନ୍ଦୁଙ୍କ ପ୍ରବେଶ

ନିଷେଧ ହିଁ ଠିକ୍ । ଅନ୍ୟମାନଙ୍କ ମତ ସେମାନଙ୍କ ବ୍ୟକ୍ତିଗତ ହୋଇପାରେ ।

—————(୦୦)—————

ସଲୀଳ କୁମାର ସ୍ୱାଇଁ

କିଛି କହି ପାରିବି ନାହିଁ ।

—————(୦୦)—————

ପ୍ରିୟଦର୍ଶୀ ତ୍ରିପାଠୀ

କିଛି କହି ପାରିବି ନାହିଁ

—————(୦୦)—————

ଉର୍ମିଳା ମିଶ୍ର

ମୋ ମତରେ ନୁହେଁ.... ଠାକୁରଙ୍କ ପାଖରେ ଏଇ ଭେଦଭାବକୁ ମୁଁ ପସନ୍ଦ କରେନି ।

—————(୦୦)—————

ରଞ୍ଜନ କୁମାର ପାଣିଗ୍ରାହୀ

ହିନ୍ଦୁ ମାନଙ୍କୁ ମୁସଲ୍‌ମାନଙ୍କ ପ୍ରାର୍ଥନା ଗୃହରେ ଉପସ୍ଥିତ ରହିବାକୁ ଅନୁମତି ନାହିଁ, ତେବେ ସେମାନଙ୍କୁ ଶ୍ରୀମନ୍ଦିରରେ ପ୍ରବେଶ ପାଇଁ ଅନୁମତି ଦେବା କାହିଁକି ? ସେମାନେ କ'ଣ କହି ଦେଇପାରିବେ ଯେ ଆମ ଭଗବାନ ସେମାନଙ୍କ ଭଗବାନଙ୍କ ପରି ସବୁଠାରେ ଅଛନ୍ତି ବୋଲି ?

—————(୦୦)—————

ବିଭୁତି ରଥ

ରଞ୍ଜନ ତୁମେ ଭୁଲ କହିଲ । କୌଣସି ବି ଧର୍ମରେ ଅନ୍ୟ ଧର୍ମର ବ୍ୟକ୍ତିକୁ ପ୍ରବେଶ ପାଇଁ କୌଣସି ବାଧା ନାହିଁ, ସେଇଥି ପାଇଁ ଆପଣ ଯେକୌଣସି ଧର୍ମସ୍ଥଳରେ ବିନା ଦ୍ୱିଧାରେ ପ୍ରବେଶ କରି ପାରିବେ ।

—————(୦୦)—————

ଦେବାଶିଷ ଶତପଥୀ

ଦେବତା ମାନଙ୍କୁ ନେଇ ହିନ୍ଦୁମାନେ ସ୍ୱାର୍ଥପରତା ଦେଖାଇଛନ୍ତି । ଯଦି ଆମେ ଜଗନ୍ନାଥଙ୍କୁ ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିକର୍ତ୍ତା ବୋଲି ଧରିବା ତା ହେଲେ, ତାଙ୍କ ମନ୍ଦିରରେ ପ୍ରବେଶ କରିବା ଅଧିକାର ପ୍ରତ୍ୟେକ ବ୍ୟକ୍ତିର ରହିଛି ।

—————(୦୦)—————

ସରୋଜ ମିଶ୍ର

ଜଗନ୍ନାଥ ଜଗତର ଠାକୁର... ସର୍ବଧର୍ମ ସମନ୍ୱୟର ପ୍ରତୀକ, ତେଣୁ ମୋ ମତରେ ଶ୍ରୀ ମନ୍ଦିରରେ ଅଣ ହିନ୍ଦୁ ପ୍ରବେଶ ବହୁ ପୁରୁଣା ପରଂପରା ହେଲେ ମଧ୍ୟ ତା'ର ପୁନର୍ବିଚାର ହେବା ଆବଶ୍ୟକ, କିନ୍ତୁ ତା' ସହ ଶ୍ରୀ ମନ୍ଦିରର ସୁରକ୍ଷା ବ୍ୟବସ୍ଥା ଆହୁରି କଠୋର ହେବା ଉଚିତ ।

—————(୦୦)—————

ଶ୍ରାବଣୀ ପଟ୍ଟନାୟକ

ଯେଉଁ ମୌଳିକ ବିଚାର ଦୃଷ୍ଟିରୁ ଶ୍ରୀ ମନ୍ଦିର ରେ ଅଣ ହିନ୍ଦୁ ପ୍ରବେଶ ବାରଣ କରାଯାଇଛି, ତା'ର ପୁଙ୍ଖାନୁପୁଙ୍ଖ ବିଚାର କରା ନଯାଇ, ଭାବ ପ୍ରବଣ ହୋଇପଡ଼ି ଜଗନ୍ନାଥ ଜଗତର ଠାକୁର, ସମସ୍ତଙ୍କୁ ପ୍ରବେଶ ଅଧିକାର ମିଳିବା ଉଚିତ କହିବା ଠିକ୍ ଲାଗୁନି । ବୁଦ୍ଧିଜୀବି ମହଲରେ ଏହାର ତର୍କ ରଖାଯାଇ ବିଚାର କରାଯାଉ ।

----(୦୦)----

ଆୟୁଷି ଜୈନ୍

ଶ୍ରାବଣୀ ତୁମେ ଠିକ୍ କହିଲ । ଜଗନ୍ନାଥ ହିନ୍ଦୁ ମାନଙ୍କର ଆରାଧ୍ୟ ଦେବତା, ତେଣୁ ସେମାନେ ତାଙ୍କୁ ପୂଜା କରିବା ଉଦ୍ଦେଶ୍ୟରେ ଯାଉଥିବା ସମୟରେ ଅନ୍ୟମାନେ କେବଳ ଦେଖିବା ପାଇଁ ଯିବେ, ଏହା ଦ୍ୱାରା ଶ୍ରୀମନ୍ଦିର ଏକ ପର୍ଯ୍ୟଟନ ସ୍ଥଳ ହୋଇ ରହିଯିବ । ଯଦି କେହି ପୂଜା କରିବା ପାଇଁ ଆସେ ତେବେ ବିଶେଷ ଆବେଦନ କରିପାରେ । ଏହା ପୂଜା କୌଣସି ମଜା ନୁହେଁ । ତେଣୁ ଏହି ଆଧାରରେ ଅଣହିନ୍ଦୁ ମାନଙ୍କୁ ଶ୍ରୀ ମନ୍ଦିରରେ ପ୍ରବେଶ ମନା କରିବା ଉଚିତ୍ ।

ଯଦି ଶ୍ରୀ ମନ୍ଦିରରେ ପ୍ରବେଶ ପାଇଁ ଅନୁମତି ଦିଆଯାଏ, ତେବେ ଖ୍ରୀଷ୍ଟିୟାନ୍ ମାନେ ପ୍ରଥମେ ଯିବେ ଏବଂ ସେମାନେ ଜଗନ୍ନାଥଙ୍କ ବ୍ୟଙ୍ଗ କରିବେ । କନ୍ଧମାଳରେ ସେମାନେ ଯାହା କରୁଛନ୍ତି ତାହା ଧର୍ମାନ୍ତିକରଣ ନୁହେଁ ବରଂ ପାପ, ତେଣୁ ହିନ୍ଦୁ ବ୍ୟତୀତ ଅନ୍ୟ କୌଣସି ବ୍ୟକ୍ତିଙ୍କୁ ଏହି ମନ୍ଦିରରେ ପ୍ରବେଶାଧିକାର ଦେବା ଉଚିତ୍ ନୁହେଁ ।

----(୦୦)----

ଗୋଲାପ ମଞ୍ଜରୀ ପଣ୍ଡା

ଜଗନ୍ନାଥଙ୍କ ମନ୍ଦିରରେ ସମସ୍ତଙ୍କୁ ପ୍ରବେଶ କରିବାକୁ ଅନୁମତି ଦିଆଯିବା ଉଚିତ.. ସେ ସମସ୍ତଙ୍କର ଠାକୁର... କେତେ ଲୋକ କେତେ ଆଶା ନେଇ ଆସୁଛନ୍ତି, ଭକ୍ତଙ୍କ ଭକ୍ତି ପ୍ରଥମେ ଦେଖିବା କଥା ।

----(୦୦)----

ନଗେନ୍ ସାମଲ

ଜଗନ୍ନାଥ ମନ୍ଦିରରେ ପ୍ରବେଶ ପାଇଁ ଆପଣ ଯେଉଁ ବିଷୟ ଉପସ୍ଥାପନ କଲେ ସେଥିରୁ ମୁଁ କେତୋଟି ଯୁକ୍ତି ଉପରେ ମତ ପ୍ରକାଶ କରିବି । ପ୍ରଥମଟି ହେଲା, "ଜଗତର ନାଥ ଜଗନ୍ନାଥ ।" ହଁ ଜଗନ୍ନାଥ ଜଗତର ନାଥ ନିଶ୍ଚୟ । କିନ୍ତୁ ଜଗନ୍ନାଥଙ୍କର ନାମକରଣ କେବେ ହେଲା କହିପାରିବେ, ୧୧୦୦ ଶତାବ୍ଦୀର ମନ୍ଦିର, ମନେ କରନ୍ତୁ ସେହି ସମୟର ଠାକୁର, ସେତେବେଳେ ଅଣହିନ୍ଦୁ ଥିଲେ କୋଉଠି ? ଖ୍ରୀଷ୍ଟିୟାନ୍ ଯଦିଓ ଥିଲେ, ଓଡ଼ିଶା କଥା ଛାଡ଼ନ୍ତୁ, ସେମାନେ ଭାରତ ସୀମାରୁ ଅନେକ ଦୂରରେ ଥିଲେ । ଅନ୍ୟ ସବୁ ବିଷୟରେ ଆପଣ ବି ଜାଣନ୍ତି । ତେଣୁ ନାମ ଅନୁସାରେ ବୁଝିବାକୁ ଗଲେ ଜଗତରେ ସେତେବେଳେ ଯେଉଁ ସବୁ ଲୋକଥିଲେ, କେବଳ ହିନ୍ଦୁ ମାନଙ୍କ ଠାକୁର ବା ନାଥ ଜଗନ୍ନାଥ । ଆଜି ଅବଶ୍ୟ ଯୁଗ ବଦଳିଛି, କିନ୍ତୁ ପୁରୁଣା କଥା ଭୁଲିଗଲେ କେମିତି ହେବ ?

ଦ୍ୱିତୀୟଟି ହେଲା, ଆମ ପିଲା ଯେଉଁ ବାହାରକୁ ଯାଉଛନ୍ତି, ହଁ ମୁଁ ମଧ୍ୟ ମାଲେସିଆରେ ଅଛି, ଅନ୍ୟ ଧର୍ମର ଲୋକଙ୍କ ସହ ଚଲାବସା କରୁଛି, କିନ୍ତୁ ଏହା କେବଳ ମୋର ନୁହେଁ ଅନ୍ୟ ଧର୍ମ ର ବ୍ୟକ୍ତିଙ୍କର ଆବଶ୍ୟକ୍ତା। ମୋଟାମୋଟି ଭାବରେ ଏହା ଏକ ବ୍ୟବସାୟ, ତେଣୁ ଏହାର ମନ୍ଦିରରେ ପ୍ରବେଶ ସହିତ କୌଣସି ସମ୍ବନ୍ଧ ନ ରହିବା ଉଚିତ୍।

ଅଣସୁଦ୍ଧି ହେଲେ ଭୋଗ ନଷ୍ଟ କରିବା କଥା ଉପରେ ଆମେ ଆଲୋଚନା କରିବା ଅନୁଚିତ। ଜଗନ୍ନାଥଙ୍କର ନୀତି କେବଳ ସେହିମାନେ ଜାଣନ୍ତି । ସେମାନଙ୍କର ଏହା ବିଶ୍ୱାସ, ବିଶେଷ କରି ଏଥି ସହିତ ବିଜ୍ଞାନ କୁ ଯୋଡ଼ିବା ଉଚିତ୍ ହେବନାହିଁ। ନିଜେ ଭଗବାନ ତ ଆସିକି ଆମକୁ ବୁଝେଇବେନି କଣ ଠିକ୍ ଆଉ କଣ ଭୁଲ ।

ଚତୁର୍ଥ କଥାଟି ହେଲା ଅସଲି ପ୍ରବେଶ କଥା। ଜଗନ୍ନାଥ ମନ୍ଦିର ଭିତରକୁ ବିଶେଷ କରି ଭକ୍ତ ପ୍ରବେଶ କରନ୍ତି। ଅଣ ହିନ୍ଦୁ ଯଦି ପ୍ରବେଶ କରିବେ ସେ ହେବେ ପର୍ଯ୍ୟଟନକାରୀ, କେତେକ ଖଳ ପ୍ରକୃତିର ଲୋକ ବି ଅଛନ୍ତି। ସେମାନଙ୍କୁ ବାଦ୍ ଦିଅନ୍ତୁ। ଆମେ ଏହି ଭକ୍ତ ଆଉ ପର୍ଯ୍ୟଟକଙ୍କ କଥା ହେବା। ମୋର ମନେ ପଡୁଛି, ମୁଁ ଦିଲ୍ଲୀରେ ଥିବା ସମୟରେ କୁତୁବ୍ ମିନାର୍ ଯାଇଥିଲି। ଆମେ ଯେତେସବୁ ପର୍ଯ୍ୟଟକ ଯାଇଥିଲୁ ଚପଲ ପିନ୍ଧି ସବୁଆଡ଼େ ବୁଲୁଥିଲୁ, କିଛି ମୁସଲ୍‌ମାନ ପରିବାର୍ ଆସି ସେଠାରେ ପ୍ରାର୍ଥନା କଲେ। ମୋତେ ଏ ସବୁ ଦେଖି କିଛି ଭଲ ଲାଗିଲାନି। କାରଣ ଆମେ ସେମାନଙ୍କ ବିଶ୍ୱାସ ଅଥବା ଭକ୍ତିକୁ ହେୟ ମନେ କଲୁ ବା ଉପଯୁକ୍ତ ସମ୍ମାନ ଦେଇ ପାରିନଥିଲୁ। ସେହିପରି ଭକ୍ତଙ୍କୁ ପର୍ଯ୍ୟଟକଙ୍କ ସହ ନ ମିଶିବା ହିଁ ଠିକ୍। ଜଗନ୍ନାଥ ବର୍ଷକୁ ଥରେ ବହାରକୁ ଆସନ୍ତି ନିଜେ ଦର୍ଶନ ଦେବାକୁ ଭକ୍ତଙ୍କୁ, ତା'ପରେ ୧୧୦୦ ଶତାବ୍ଦୀର ମନ୍ଦିରର ନିର୍ମାଣଶୈଳୀ ସେହି ଅନୁସାରେ, ଗର୍ଭ ଗୃହ ମଧ୍ୟରେ ପ୍ରବେଶ କଲେ ହାତ ନିଜେ ନିଜେ ଉଠିଯାଏ ଜୟ ଜଗନ୍ନାଥ କହି। ସେଠିକୁ ପର୍ଯ୍ୟଟକ ଗଲେ ସେହି ପରିବେଶ ବା ଭାବ ରହିବ ନାହିଁ।

ହଁ, ମୋ ମନକୁ ଗୋଟେ ପ୍ରସ୍ତାବ ଆସୁଛି, ଯଦି ଆମେ ପର୍ଯ୍ୟଟକ ମାନଙ୍କ ପାଇଁ କିଛି ବିଶେଷ ବ୍ୟବସ୍ଥା କରି ପାରନ୍ତେ, ମନ୍ଦିର ଭିତରେ ପ୍ରବେଶ ନ କରି ମଧ୍ଯ୍ ସେମାନେ ମନ୍ଦିର ବିଷୟରେ ଦେଖିଜାଣି ପାରନ୍ତେ ତେବେ ବାଡ଼ି ଭାଙ୍ଗନ୍ତା ନାହିଁ ଆଉ ସାପ ବି ମରି ପାରିଥା'ନ୍ତା ।

----( ୦ ୦ )----

ଆମ ମତାମତ ସର୍ବସାଧାରଣଙ୍କ ଠାରୁ କିଛି ଅଲଗା ନାହିଁ, ହେଲେ ଆମେ ଜ୍ଞାନୀ ନୋହୁଁ, କିମ୍ବା ସମାଜର ତଥାକଥିତ ଜ୍ଞାନୀ ମାନଙ୍କ ସମକକ୍ଷ ବି ନୋହୁଁ । ହେଲେ ସାଧାରଣ ମଣିଷ ମାନଙ୍କ ପରି ଆମେ କେବଳ ଏତିକି ବୁଝୁ ଯେ ଭଗବାନ ହେଉଛନ୍ତି ଧର୍ମରୁ ଉର୍ଦ୍ଧ୍ୱରେ ତେଣୁ ତାଙ୍କ ନିକଟରେ ଧର୍ମଗତ ଭେଦଭାବ କରିବା ଅନୁଚିତ। ଯିଏ ଜଗତଠାକୁର ସେ ପୁଣି ଅଣ ହିନ୍ଦୁ ଓ ହିନ୍ଦୁ ଭିତରେ ଫରକ କରିବେ କାହିଁକି ? ଯଦି ସେପରି ହୋଇଥାନ୍ତା ତା'ହେଲେ ଭକ୍ତ ସାଲବେଗ ଜଗନ୍ନାଥଙ୍କ ପରମ ଭକ୍ତ ଭାବେ ପରିଚିତ ହୋଇନଥାନ୍ତେ !

ତେଣୁ ଶ୍ରୀ ମନ୍ଦିରରେ ହିନ୍ଦୁ-ଅଣ ହିନ୍ଦୁ ଭେଦଭାଦ ଦୂର କରାଯିବା ଉଚିତ ବୋଲି ଆମେ ମନେ କରୁଛୁ। ବାକି ଜଗତର ଠାକୁର ଯାହା ଚିନ୍ତା କରିବେ । ତାହା ହିଁ ହେବ ।